# ନିବେଦନ

ସମସ୍ତ ପ୍ରଶାସକଙ୍କୁ ନିବେଦନ - କ୍ଷମତା ଓ ପଦବୀର ଅହଙ୍କାରରେ ବଶବର୍ତ୍ତୀ ହୋଇ ସରକାରୀ ଅର୍ଥର ଅପବ୍ୟୟ ନ କରନ୍ତୁ । ଯାହାଙ୍କ ଉଦ୍ଦେଶ୍ୟରେ କାର୍ଯ୍ୟ ଅଭିପ୍ରେତ ସେମାନଙ୍କ ସମସ୍ୟା ସବୁ ଭଲଭାବେ ଅଧ୍ୟୟନ କରନ୍ତୁ ଓ ପ୍ରତ୍ୟକ୍ଷ ଅନୁଭୂତି ସଂପନ୍ନଙ୍କର ପରାମର୍ଶ ଗ୍ରହଣ କରନ୍ତୁ ଏବଂ ସମସ୍ତ ଉପଭୋକ୍ତା ଦାନର ପାତ୍ରବୋଲି ନ ବିଚାରି ଶ୍ରଦ୍ଧାସ୍ପଦ ଅତ୍ୟାବଶ୍ୟକ ପାତ୍ର ବୋଲି ବିଚାର କରନ୍ତୁ । ସହରାଞ୍ଚଳରେ ବସ୍ତିବାସିନ୍ଦାଙ୍କର ଆବଶ୍ୟକତା ତ ଅଛି, ମାତ୍ର ସାମାଜିକ ଆବଶ୍ୟକତାକୁ ଅଧିକ ହିସାବ କରାଯାଇଥାଏ ।

-ଲେଖକ




**ପଞ୍ଚାନନ କାନୁନ୍‌ଗୋ**




ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ପବ୍ଲିକ୍ ଫାଇନାନ୍‌ସ ଆଣ୍ଡ୍ ପଲିସି

ମଧୁସୂଦନ ନଗର, ଏମ୍.-୭୧, ୟୁନିଟ୍-୪, ଭୁବନେଶ୍ୱର

ମୋ. ୦୬୭୪-୨୫୦୬୭୮୪, ୯୪୩୮୩୬୦୮୪୯

# ବସ୍ତି

## ପଞ୍ଚାନନ କାନୁନ୍‌ଗୋ

*ପ୍ରକାଶକ*

ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ପବ୍ଲିକ୍ ଫାଇନାନ୍ସ ଆଣ୍ଡ୍ ପଲିସି

ଏମ୍.-୭୧, ମଧୁସୂଦନ ନଗର, ୟୁନିଟ୍-୪, ଭୁବନେଶ୍ୱର

ମୋ. : ୦୬୭୪-୨୫୦୬୭୮୪, ୯୪୩୮୩୬୦୮୪୯

*ପ୍ରକାଶ କାଳ :*

ଅଗଷ୍ଟ - ୨୦୧୮

*ମୁଦ୍ରଣ :*

ପଦ୍ମା କମର୍ସିଆଲ୍ ସେଣ୍ଟର,

୪୨-ଏ, ମଧୁସୂଦନ ନଗର, ୟୁନିଟ୍-୪, ଭୁବନେଶ୍ୱର-୭୫୧୦୦୧



# BASTI

## Panchanan Kanungo

***Publisher :***

**Institute of Public Finance and Policy**

M-71, Madhusudan Nagar, Unit-4, Bhubaneswar

Mob. 9438360849

***Published :***

**August 2018**

***Printed by :***

**Padma Commercial Centre,**

42-A, Madhusudan Nagar,

Unit-4, Bhubaneswar-751001

# ପୁସ୍ତକ ସମ୍ପର୍କରେ

ନଗରାଞ୍ଚଳରେ ବସ୍ତିକୁ ନେଇ ସମସ୍ୟା ଦିନକୁ ଦିନ ବଢ଼ିବାରେ ଲାଗିଛି । ବସ୍ତିକୁ ଛାଡ଼ି ନଗର ବା ସହରର ସ୍ଥିତି ନାହିଁ । ଅନ୍ୟ ନାଗରିକଙ୍କ ଅଧିକାର ପରି ବସ୍ତିବାସିନ୍ଦାମାନଙ୍କର ଭାରତୀୟ ସଂବିଧାନ ମତେ ଏକ ମର୍ଯ୍ୟାଦାଯୁକ୍ତ (Right to live with dignity) ଜୀବନଯାପନ କରିବାର ଅଧିକାର ଅଛି । ସହରର ଲୋକସଂଖ୍ୟା ବୃଦ୍ଧି ସହିତ ବସ୍ତି ଓ ବସ୍ତିବାସିନ୍ଦାଙ୍କ ସଂଖ୍ୟା ବୃଦ୍ଧି ପାଇବା ସ୍ୱାଭାବିକ । ଅଧିକନ୍ତୁ ଅନେକ ନୂଆ ନୂଆ ସହର ମୁଣ୍ଡଟେକି ଉଠୁଛି । ସହରର ରାସ୍ତାନିର୍ମାଣ, ଜଳ ଯୋଗାଣ, ଜଳ ନିଷ୍କାସନ, ପରିମଳ ବ୍ୟବସ୍ଥା, ବିଦ୍ୟୁତ୍‌ଯୋଗାଣ କରିବା ସହିତ ସଫେଇ କାର୍ଯ୍ୟ ଯେପରି ଅପରିହାର୍ଯ୍ୟ ସେହିପରି ବସ୍ତିଗୁଡ଼ିକୁ ଉନ୍ନତମାନର ଓ ବସ୍ତିବାସିନ୍ଦାଙ୍କ ଜୀବିକା ଜୀବନ ନିର୍ବାହ ଦିଗରେ ସହାୟକ ହେବାଭଳି ପ୍ରସ୍ତୁତ କରିବାର ଯୋଜନା ସବୁ ହେବା ଦରକାର । ସହରରେ ରହୁଥିବା ବାବୁ ସଂପ୍ରଦାୟର ଶୀତତାପ ନିୟନ୍ତ୍ରିତ ଘରେ ରହୁଥିବା ବ୍ୟକ୍ତିମାନେ ନିଜ ଘର ସାମନାରେ ପୁଳାଏ ଅଳିଆ ଦେଖିଲେ ବିଗିଡ଼ି ଯା'ନ୍ତି । ସେମାନଙ୍କ ଭିତରେ ବିରକ୍ତିଭାବ ଉକୁଟି ଆସେ । ତେବେ ଏହିସବୁ ଅଳିଆ ସଫା କରୁଥିବା ଲୋକମାନେ କେଉଁଠି ରୁହନ୍ତି, କିପରି ରୁହନ୍ତି ସେ ସଂପର୍କରେ ଚିନ୍ତା କରିବା ଦରକାର । ସେମାନେ ସମସ୍ତେ ଜଣେ ଜଣେ ସଭ୍ୟ ମଣିଷ ଓ ସୁସ୍ଥ ଜୀବନଯାପନ କରିବା ବାବୁମାନେ କ'ଣ ଚାହାନ୍ତି ନାହିଁ ? ଏଣୁ ବସ୍ତିବାସିନ୍ଦାଙ୍କ ପାଇଁ ଉନ୍ନତମାନର ସ୍ୱାସ୍ଥ୍ୟକର ଜୀବନ ନିର୍ବାହ କରିବା ନିମନ୍ତେ ଗୋଟିଏ ଯୋଜନା ପ୍ରସ୍ତୁତ ହେବା ଦରକାର । ୨୦୦୨-୦୩ ମସିହାରେ ଭୁବନେଶ୍ୱର ସହରପାଇଁ ନୂତନ ଯୋଜନା ପ୍ରସ୍ତୁତ କରିବାକୁ ଆଇ.ଆଇ.ଟି ଖଡ଼ଗପୁର ଓ ଟାଟାର ଯୋଜନା ପ୍ରସ୍ତୁତକାରୀ ସଂସ୍ଥାକୁ ଦାୟିତ୍ୱ ଦିଆଯାଇ ରାଜକୋଷରୁ ପ୍ରଭୁତ ଅର୍ଥ ବ୍ୟୟ କରାଗଲା । ତେବେ ତା'ର ପରିଣତି ଏଇଆ ହେଲା ଯେ ତା'ର ପରବର୍ତ୍ତୀ ବର୍ଷମାନଙ୍କରେ ନଗରର ରାସ୍ତାଘାଟରେ ଚଳାଚଳ ବନ୍ଦ ହେଲା, ବସ୍ତିସବୁ ରାସ୍ତାକୁ ଆବୋରି ରହିଲା । ସାମାନ୍ୟ ବର୍ଷାହେଲେ ବସ୍ତି ଭିତରେ ପାଣିପଶି ଜୀବନ ଅସ୍ତବ୍ୟସ୍ତ କଲା । ବସ୍ତି ଆହୁରି ଅଧିକ ଅସଜଡ଼ା ହେବା ଦେଖାଗଲା । ବସ୍ତି ବାସିନ୍ଦାଙ୍କ ସମସ୍ୟା ବୃଦ୍ଧି ପାଇବାରେ ଲାଗିଛି । କେବଳ

ଭୁବନେଶ୍ୱର ନୁହେଁ ରାଜ୍ୟର ୫ ଗୋଟି କରପୋରେସନ୍ ଓ ୧୦୬ଗୋଟି ପୌରାଞ୍ଚଳରେ ବସ୍ତିବାସୀନ୍ଦାଙ୍କ ସମସ୍ୟା ଦ୍ରୁତଗତିରେ ବୃଦ୍ଧି ପାଇଛି ।

ସମସ୍ୟାର ସମାଧାନ ନିମନ୍ତେ ପ୍ରଥମତଃ

ଗୋଟିଏ ପ୍ରତ୍ୟେକ୍ଷ ଅଭିଜ୍ଞାତାରୁ ଜନ୍ମ ନେଇଥିବା ଖସଡ଼ା ବା ନକ୍‌ସା ପ୍ରସ୍ତୁତ ହେବା ଦରକାର । ଏହା କେବଳ ଅନୁଭବୀମାନଙ୍କର ବିଚାରବିମର୍ଷରୁ ହିଁ ପ୍ରସ୍ତୁତ ହେବା ଦରକାର । ସେପରି ଏକ ନକ୍‌ସା ଏ ଛୋଟ ପୁସ୍ତିକାଟିରେ ଆଣିବାର ଉଦ୍ୟମ କରାଯାଇଛି । ବସ୍ତିବାସିନ୍ଦାଙ୍କ ସମସ୍ୟା ନେଇ କାର୍ଯ୍ୟ କରୁଥିବା ଅନେକ ବ୍ୟକ୍ତି ଓ ସଂସ୍ଥା ସହ ଆଲୋଚନା କରିବାର ସୌଭାଗ୍ୟ ଅନେକଥର ମିଳିଥିଲା । ଅନେକ ବସ୍ତିଭିତରେ ବୁଲି ବାସିନ୍ଦାଙ୍କ ସମସ୍ୟା ସଂପର୍କରେ ପ୍ରତ୍ୟେକ୍ଷ ଜ୍ଞାନ ଆହରଣ କରିବା ମଧ୍ୟ ହୋଇଛି । ଅଧିକନ୍ତୁ ଏଥିସହିତ ରାଜ୍ୟର ଆର୍ଥିକ ସ୍ଥିତି ଓ ଯୋଜନା ସଂପର୍କରେ ଜାଣିବାକୁ ସୁଯୋଗ ମିଳିଥିଲା ।

ପୁସ୍ତକଦତ୍ତ ବିଚାର ପ୍ରାଥମିକ ଭାବେ ପ୍ରସ୍ତୁତ ହେଲେ ମଧ୍ୟ ଏହାକୁ ମୁଳଭିତ୍ତି କରି ସରକାରଙ୍କର ଅଭିଜ୍ଞ ଯୋଜନାକାରୀମାନେ ସମସ୍ତ ସହର ପାଇଁ ଗୋଟିଏ ବିସ୍ତୃତ ଯୋଜନା ପ୍ରସ୍ତୁତ କରିବା ଦରକାର । ସେମାନଙ୍କର ଜ୍ଞାନ ପ୍ରତି ସମ୍ମାନ ଅଛି, ହେଲେ ସେମାନଙ୍କ ଭିତରେ ଥିବା ଅହଂକାର ଓ ସମସ୍ୟା ସଂପର୍କୀତ ଅଜ୍ଞତା ଆଦୌ ଗ୍ରହଣୀୟ ନୁହେଁ । ଏହି ଅହଁଙ୍କାର ଯୋଗୁ ଭଲ ଯୋଜନା ଫଳପ୍ରଦ ହେଉନାହିଁ, ଭୁଲ୍ ଆଇନ୍ ସବୁ ପ୍ରସ୍ତୁତ ହେଉଛି, ଯାହାକି କାର୍ଯ୍ୟକାରୀ ହୋଇ ନଥାଏ । ସେମାନେ ନିଷ୍ଚୟ ଉଚ୍ଚଶିକ୍ଷିତ, ଜ୍ଞାନ କୌଶଳର ଅଧିକାରୀ ହୋଇପାରନ୍ତି ସମସ୍ୟାଗୁଡ଼ିକୁ ଅନୁଧ୍ୟାନ କରିବାର ତୃତୀୟ ନୟନ ବ୍ୟବହାର କରି ନଥାନ୍ତି । ଏ ମଧ୍ୟରେ ବସ୍ତିବାସିନ୍ଦାଙ୍କୁ ସ୍ଥାୟୀଭାବେ ବସବାସ କରିବାର ସୁଯୋଗ ଦେବାକୁ ରାଜ୍ୟ ସରକାର ଗୋଟିଏ ଆଇନ (ଓଡ଼ିଶା ବସ୍ତିବାସିନ୍ଦାମାନଙ୍କ ଭୂମି ଅଧିକାର ଅଧିନିୟମ ୨୦୧୭) ପ୍ରଣୟନ କରିଛନ୍ତି । ଯାହାକି ଏ ପୁସ୍ତକରେ ସ୍ଥାନିତ ହୋଇଛି । ତାକୁ ତର୍ଜମା ମଧ୍ୟ କରାଯାଇଛି । ଏଣୁ ଏ ପୁସ୍ତକ ପାଠ କରିବା ସମୟରେ ଯଦି କିଛି ପ୍ରଶ୍ନ ସୃଷ୍ଟି ହୁଏ, ତାହା ପ୍ରଦତ୍ତ ଠିକଣାରେ ଜଣାଇଲେ, ପ୍ରସ୍ତୁତ ବିଚାର ସଂଶୋଧନ କରାଯାଇ ପାରିବ ।

– ପଞ୍ଚାନନ କାନୁନ୍‌ଗୋ



# ଅନ୍ଧରେ...

ସ୍କୁଲରେ ପଢ଼ିବାବେଳ ସମୟ । କଟକ ସହରରେ ରହୁଥିଲି । ସଫେଇ କର୍ମଚାରୀ ଏବଂ ମେହେନ୍ତର ମାନଙ୍କର ଦୁର୍ଦ୍ଦଶା ସାମନାରେ ଦେଖିଛି । ମୁଣ୍ଡରେ, କାଖରେ ଉଠାପାଇଖାନାରୁ ନେଉଥିବା ବର୍ଜ୍ୟସବୁ ଦେଖି ମନ ବିସେଇ ଯାଉଥିଲା । ଆମେ ସବୁ ହରିପୁର ପାଇଖାନା କଡ଼ଦେଇ ଯାଉଥିବାବେଳେ ଗନ୍ଧରେ ନାକ ଫାଟିଯାଉଥିଲା । ଅଥଚ ସେମାନେ ଟୋକେଇ ଧରି ତା' ଭିତରେ ପଶୁଥିଲେ । ମନରେ ଆସୁଥିଲା ଏମାନଙ୍କ ଏଭ ଅବସ୍ଥାର ପରିବର୍ତ୍ତନ କ'ଣ ହେବ ନାହିଁ ? ଅବଶ୍ୟ ସେଦିନର ସେ ଅବସ୍ଥାରେ ଅନେକ ପରିବର୍ତ୍ତନ ଘଟିଛି । ପରବର୍ତ୍ତୀକାଳରେ ନିର୍ବାଚନ ରାଜନୀତିରେ ଭାଗନେଇ ନଗରାଞ୍ଚଳ ବସ୍ତୀବାସିନ୍ଦାଙ୍କ ସଂପର୍କରେ ଆସିଲି । ସେମାନଙ୍କ ବସ୍ତି ଭିତରେ ବୁଲିଲାବେଳେ ଅନେକ ପ୍ରତ୍ୟେକ୍ଷ ଅନୁଭୂତି ଲାଭକଲି । ତାହା ୧୯୭୮ ମସିହା ସମୟର କଟକ ମ୍ୟୁନିସିପାଲିଟି ନିର୍ବାଚନ ହେଉ ଅବା ୨୦୦୩ ମସିହାର ଭୁବନେଶ୍ୱର କର୍ପୋରେସନ୍ ନିର୍ବାଚନ ହେଉ, ସବୁ ସମୟରେ ସେମାନଙ୍କୁ ଅତି ନିକଟରୁ ଦେଖିବାର ସୁଯୋଗ ପାଇଲି । ପୁନର୍ବାର ୧୯୯୨ର କଟକ ମ୍ୟୁନିସିପାଲଟି ନିର୍ବାଚନ ହେଉ ଅବା ୨୦୦୮ର ଭୁବନେଶ୍ୱର ପୌରନିର୍ବାଚନ ହେଉ ସେହିସବୁ ବସ୍ତି ଦେଖିବାର ସୁଯୋଗ ମିଳିଲା । ଧାରଣା ହେଲା ସେମାନଙ୍କ ଅବସ୍ଥା ବିଶେଷ କିଛି ପରିବର୍ତ୍ତନ ଘଟିନାହିଁ । ଅପରିଷ୍କାର ବସ୍ତି ଭିତରେ ଅପରିଚ୍ଛନ୍ନ ମଣିଷଗୁଡ଼ାକ ଅଲୋଡ଼ାହୋଇ ପଡ଼ିଥାନ୍ତି । ଦରକାରବେଳେ ସହର ତମାମ ବାବୁମାନଙ୍କ ଲୋଡ଼ା ପଡ଼ନ୍ତି । ବେଳେବେଳେ କାଦୁଅ ମଚମଚ ହେଇ, ଅସନା, ଅଳିଆ ଆବର୍ଜନା ପରିତ୍ୟକ୍ତ ମଳମାଡ଼ି, ଧୋବଧାଉଳିଆ ନେତାମାନେ ଅନ୍ଧାରରେ ମାଡ଼ି ଆସନ୍ତି । ଆଦର କରି ଡାକନ୍ତି । ଭୋଟ ପାଇଁ ଲୋଡ଼ା ପଡ଼ନ୍ତି ବଡ଼ମାନେ । ପ୍ରଚାର ପାଇଁ ଖୋଜା ହୁଅନ୍ତି ଯୁବକମାନେ ଆଉ ପୋଷ୍ଟର ମାରିବାକୁ ଛୁଆମାନେ । ଯନ୍ତ୍ରଣାସିକ୍ତ ଦରଦୀଭାବ ନେଇ ଉଗାଳି ପକାନ୍ତି ସମବେଦନାର ସ୍ୱର । ଛି-ଛି ଏମିତିଆ ଅସନା ଭିତରେ କେମିତି ରହିଛ କେଜାଣି ? ଢକ୍ ଢକ୍ କରି ପିଇ ଯା'ନ୍ତି, ସାଙ୍ଗରେ ଆଣିଥିବା ବୋତଲଭରା ମିନରାଲ ପାଣି । ଅବା ସାହୀବସ୍ତିର କୋଉ ଏକ ବୋଲକରାକୁ ନିର୍ଦ୍ଦେଶ ଦିଅନ୍ତି ନେ... ନେ... ଏ ଟଙ୍କା ଧ... । ଦି'ଟା 'ମିନରାଲ ବଟଲ' ନେଇ ଆସିଲୁ । ଥିବା ମ୍ୟୁନିସିପାଲିଟି କର୍ପୋରେଟର, କାଉନସିଲର, ଚେୟାରମ୍ୟାନ, ମେୟରଙ୍କୁ ପୁଣି ଶୋଧନ୍ତି । ଏମାନେ ଭୋଟପାଇଁ କ'ଣ କରିଛନ୍ତି ? ମଣିଷଙ୍କୁ କ'ଣ ମଣିଷ ଭଳିଆ ଦେଖୁଛନ୍ତି ? ଗତଥର ଯାହା ଦେଖିଥିଲୁ ଏଥର ମଧ୍ୟ ସେଇ ଅବସ୍ଥା ଦେଖୁଛୁ । ହଉ ଏଥର ଆମକୁ ଭୋଟ ଦିଅ - ଦେଖିବ ସବୁ ବଦଳିଯିବ । ଭୋଟର ହୁଡ଼ିଲେ ପାଞ୍ଚବରଷ । ତମେମାନେ ତ ସେମିତି ହୁଡ଼ି ଚାଲିଛ । ବିରୋଧିଦଳ ସରକାରୀଦଳକୁ ବୁହେ ଗାଳି ଦିଅନ୍ତି । ଠକ, ଶଠ, ଗୁଡ଼ାଏ ମିଛ ପ୍ରତିଶ୍ରୁତି ଦେଇ ଭଣ୍ଡୁଛନ୍ତି । କାହିଁ ଏପର୍ଯ୍ୟନ୍ତ ତମକୁ ସ୍ଥାୟୀ ଭାବରେ ରହିବାକୁ କିଛି ବ୍ୟବସ୍ଥା ହେଲାନାହିଁ । କୁଆଡ଼େ ପରା ଘର ଦେଉଥିଲେ, ପଟା ଦେଉଥିଲେ ? ସରକାରୀ ଦଳର ନେତା ଆସି ଆଶ୍ୱାସନା ଦିଅନ୍ତି । କର୍ପୋରେଟରଙ୍କୁ ଦୋଷ ଦିଅନ୍ତି - ଏତେକରି

କୁହାଗଲା - ତାଲିକାଟା ଠିକ୍ କରି ସମୟରେ ହେଲାନାହିଁ । ପରନ୍ତୁ କର୍ପୋରେଟ୍‌ର କି କାଉନ୍‌ସିଲର କୁହେ, ନା' ଦୁଇ ତିନିଦିନ ଭିତରେ ତାଲିକା ପ୍ରସ୍ତୁତ ହୋଇଯିବ ଯେ ହେଲେ ଭୋଟ ଆସିଗଲା ତ, ସବୁ ବନ୍ଦ । ନହେଲେ ପଟା ବଣ୍ଟା ହେଇ ଯାଇଥାନ୍ତା । ସେଥିରେ ଯଦି କେହି ବସ୍ତିଲୋକ ଟିକେ କିଛି କହିବ ବାବୁମାନେ ତାଙ୍କର ନିଜ ରୂପ ଦେଖାନ୍ତି । ଟେଲିଫୋନ୍ କରି କୁହନ୍ତି- କୋଉ ଅଫିସରକୁ - ନାଇଁ ଏବେ ଏ ବସ୍ତୀ ଭାଙ୍ଗନାହିଁ । ଭୋଟସରୁ ସବୁ ଦେଖିବା । ବାସ୍ ବସ୍ତି ଭାଙ୍ଗିବାର ବଡ଼ ଭୟ ପ୍ରଦର୍ଶନ ।

ଏମିତି ଏମାନଙ୍କର ଜୀବନ ନାଟିକା ଏମାନଙ୍କ ହାତରେ । ଏ ସହରର ବଡ଼ ଧୋବଧାଉଳିଆ ବାବୁମାନେ କବାଟ ଝରକା ବନ୍ଦ ରଖି ରୁହନ୍ତି, ନା' ଏମାନଙ୍କର ଗନ୍ଧ ସେମାନଙ୍କ ନାକରେ ବାଜେ, ନା' ଏମାନଙ୍କ ସମସ୍ୟା ସେମାନଙ୍କ ଆଖିରେ ପଡ଼େ । ତାଙ୍କର ଦରକାରବେଳେ କଣ୍ଟ୍ରାକ୍ଟର ଦୌଡ଼ନ୍ତି ଏ ବସ୍ତିକୁ । ରଙ୍ଗମିସ୍ତ୍ରୀ, ପାଣି ମିସ୍ତ୍ରୀ, ମୂଲିଆ, ମଜୁରୀଆ ଯୋଗାଡ଼ନ୍ତି । ଏଇ ବାବୁଭେୟାମାନେ କେବେ ବୁଝିଛନ୍ତି ସମସ୍ତ ସଫେଇ କର୍ମଚାରୀ ଆଉ ତାଙ୍କ ପରିବାର କେଉଁଠି କିପରି ରୁହନ୍ତି ? ସେମାନେ କ'ଣ ବୁଝନ୍ତି ତାଙ୍କ ପିଲାଏ ରାସ୍ତା ଉପରେ ଖାଉଥିବା ଦହିବରା, ଗୁପ୍‌ଚୁପ୍ କିଏ ଆଣୁଛି, କୋଉଠି ତିଆରି ହେଉଛି ? ତାଙ୍କ ଲୁଗା କୋଉଠି ସଫାହୁଏ ? ଯୋଉମାନେ ସଫା କରନ୍ତି ସେମାନେ କୋଉଠି ରୁହନ୍ତି । ସଫେଇ କର୍ମଚାରୀ ଯୋଉମାନେ ନର୍ଦ୍ଦମା ସଫା କରନ୍ତି ପ୍ରତିଦିନ ସକାଳୁ ସକାଳୁ ରାସ୍ତା ଓଳାନ୍ତି, ସେମାନେ ସବୁ କୋଉଠି ରୁହନ୍ତି । ତାଙ୍କର ସେଥିରେ ଯାଏ କେତେ, ଆସେ କେତେ ? ସବୁଠାରୁ ବଡ଼ କଥା ହେଉଛି ଏଇସବୁ ଅସଜଡ଼ା ବସ୍ତିର ବାସିନ୍ଦାମାନଙ୍କର କେବଳ ଦେହ ଅପରିଷ୍କାର ରୁହେନାହିଁ । ବେଳେବେଳେ ମନକୁ ଅପରିଷ୍କାର ଗ୍ରାସ କରେ । ଖୁନ୍ଦଖୁନ୍ଦି, ଗହଳିଚହଳି ଭିତରେ 'ଅଶିଷ୍ଟ'ମାନେ ପଶି ଆସନ୍ତି ବସ୍ତି ଥରିଉଠେ । ସେମାନେ ବିଶିଷ୍ଟ ପାଲଟି ଯା'ନ୍ତି । ବୋମା ଫୁଟେ । ଗୁଳି ଫୁଟେ । ଏତେସବୁ ଅଘଟଣ ପାଇଁ ସାରା ବସ୍ତିକୁ ସମାଲୋଚନାର ଶୀକାର ହେବାକୁ ପଡ଼େ ।

ଏଇତ ହେଉଛି ବସ୍ତିବାସିନ୍ଦାଙ୍କ ଜୀବନ । ନା ସେମାନେ ଆଲୋକିତ ହୁଅନ୍ତି, ନା ତାଙ୍କ ବସ୍ତି ଅନ୍ଧାକାରରୁ ମୁକ୍ତିପାଏ । ଏମାନେ ଖାଲି କାମରେ ଲୋଡ଼ା, ଭୋଟରେ ଲୋଡ଼ା ଅଥଚ ଏମାନଙ୍କ 'ଅସୁବିଧା' ଗୁଡ଼ାକୁ ସେମିତି ଜମାଟବାନ୍ଧି କୂଢ଼ କୂଢ଼ ହୋଇ ଜମିରହେ । ଲୋଭ-ଭୟ ଭିତରେ ଏମାନେ ବାଟବଣା ହୁଅନ୍ତି । ସେମାନଙ୍କ ଆସବାବପତ୍ର ଘରୁ କାଢ଼ି ଫୋପାଡ଼ି ଦିଆଯାଏ । ବସ୍ତି ଉଚ୍ଛେଦ ହୁଏ । ବାବୁଙ୍କର ଷ୍ଟାର ହୋଟେଲ ଖୋଲିବ । ଏମାନଙ୍କ ଚୁଲି ଚାଉଳ ଫୋପଡ଼ା ହୁଏ । ଏଥିରୁ କ'ଣ ଏମାନଙ୍କୁ ତ୍ରାହୀ ନାହିଁ? ଏମାନେ ସବୁ ମଣିଷପରି ବଞ୍ଚିବାର ଅଧିକାର କେବେ ପାଇବେ ? ଭୟ ଓ ଲୋଭରୁ କେବେ ମୁକ୍ତ ହେବେ ? ଘୃଣା ସମାଲୋଚନାରୁ ମୁକ୍ତ ହେଇ କେବେ ଆଦର ସମବେଦନା ପାଇବେ ? ଏମାନଙ୍କର ଅସ୍ଥିରତା ଯାଯାବର ଜୀବନର ଅବସାନ କେବେ ଘଟିବ ? ସହର ବଢ଼ୁଛି, ନଗରରେ ପରିଣତ ହେଉଛି । ସାଧାରଣ ସିଟିର ନାମ ବଦଳି ସ୍ମାର୍ଟସିଟି ହେଉଛି । ବାବୁଭୟାଙ୍କ ଗାଡ଼ି ରହିବାପାଇଁ ବହୁତଳ ପ୍ରାସାଦ ନିର୍ମାଣ ହେଉଛି ।

ସୁରକ୍ଷିତ ଗାଡ଼ି ପାର୍କିଂର ବ୍ୟବସ୍ଥା ହେଉଛି । ଆଉ ଏମାନେ, ଏମାନଙ୍କ ପିଲା, ବାସସ୍ଥାନ ସବୁକିଛି ଅସୁରକ୍ଷିତ ସମାଜସେବୀମାନେ ଚିନ୍ତା ପ୍ରକଟ କରୁଛନ୍ତି । ଅନେକ ବସ୍ତି ଉନ୍ନୟନର ଦାବୀପତ୍ର ଦେଉଛନ୍ତି । ରାସ୍ତାରେ ସେମାନଙ୍କୁ ଚଳେଇ ଚଳେଇ ଧାରଣାସ୍ଥଳ ରାଜରାସ୍ତା ଥଗଉଛନ୍ତି । ତେବେ ବି ଶାସକର ହୃଦୟକୁ ଛୁଇଁ ନାହିଁ । ସେମାନେ କେବଳ 'ପ୍ରତିଶ୍ରୁତି'ର ନାୟକ ପାଲଟି ଯାଇଛନ୍ତି । ପାଣି ପାଇପ ଲାଗିଛି । ଅବା ଭିତର ରାସ୍ତା କଂକ୍ରିଟ୍ ବା ପିଚୁ ହୋଇଛି । ଲାଇଟ୍ ଖୁଣ୍ଟ କେଇଟା ପଡ଼ିଛି । ମାତ୍ର ପୂର୍ବପରି ଅଳିଆ ଆବର୍ଜନା ପୂର୍ଣ୍ଣ ଟିଣ, ପାଲ ଘେର ଭିତରେ ଖୁନ୍ଦାଖୁନ୍ଦି ହୋଇ ସାଲୁର ବାଲୁର ହେଉଛନ୍ତି । ଶ୍ରମିକ ୟୁନିୟନର କାର୍ଯ୍ୟ କରୁଥିବା ଅବସରରେ ପାରାଦ୍ୱୀପ ହେଉ ଅବା ଚୌଦ୍ୱାର ସମେତ ଅନେକ ସ୍ଥାନରେ ଶ୍ରମିକ ବସ୍ତିର ସମସ୍ୟା ମଧ୍ୟ ବୁଲି ଦେଖିଛି । ସେ ସବୁର ସମସ୍ୟା ବା ସମାଧାନ ପାଇଁ କାର୍ଯ୍ୟକରି କିଛି ପରିମାଣରେ ଫଳପ୍ରଦ ହୋଇଛି । ହେଲେ ମନେ ହେଲା କଟକ ଭୁବନେଶ୍ୱର ସମେତ ସାଧାରଣ ନଗରାଞ୍ଚଳର ବସ୍ତିବାସିନ୍ଦାଙ୍କ ସମସ୍ୟା ସେମାନଙ୍କ ଠାରୁ ଭିନ୍ନ । ଏମାନେ ଅନେକ ଭାବରେ ପ୍ରତିଶୃତି ଓ ପ୍ରତାରଣା ଭିତରେ ଛଟପଟ ହେଉଛନ୍ତି । ଏଣୁ ସେମାନଙ୍କ ସମସ୍ୟାକୁ ନେଇ ସମାଜସେବୀ ଓ ସଂଗଠନମାନେ କରୁଥିବା କାର୍ଯ୍ୟରେ ନିଜକୁ ସାମିଲ କଲି । ଅନେକ ଶିଖିଲି ଓ ଅନେକ ଭାବରେ ସମାଧାନର ସୂତ୍ର ଖୋଜି ପାଇଲି । ସମସ୍ୟା ସବୁ ଯେ ଲାଘବ ହୋଇପାରିବ ଏପରି ଭାବନା ମନରେ ଆସୁଛି । ସ୍ଥାନ-କାଳ-ପାତ୍ରର ପ୍ରକାର ଭେଦରେ ସମସ୍ୟା ମଧ୍ୟ ଭିନ୍ନ ଓ ଜଟିଳ । ତଥାପି ଗୋଟିଏ ନିମ୍ନତମ ଆଧାରରେ ସମାଧାନ କରିବାକୁ ଚେଷ୍ଟା ଏହି ପୁସ୍ତକର ପ୍ରବନ୍ଧମାନଙ୍କରେ ରଖାଯାଇଛି । ଆଶା ଅନ୍ୟମାନେ ଏଥିରେ ନିଜର ସୁଚିନ୍ତିତ ମତ ଯୋଗ କରିବେ । କାହାଦ୍ୱାରା ପ୍ରଭାବିତ ହେବେନାହିଁ ଅବା ପ୍ରଭାବ ବିସ୍ତାର କରିବାକୁ ଉଦ୍ୟମ କରିବେ ନାହିଁ । ନିଷ୍ଠା ଓ ଆନ୍ତରିକତାର ସହ କାର୍ଯ୍ୟକଲେ ସେମାନଙ୍କ ସମସ୍ୟା ସବୁକୁ ଲାଘବ କରାଯାଇ ପାରିବ ।

ଏସବୁ ଲକ୍ଷ୍ୟକରି, ଅନୁଭୂତି ଆଧାରରେ ବସ୍ତିବାସିନ୍ଦା କେବଳ ନୁହନ୍ତି ସହର ବା ନଗରର ଆବଶ୍ୟକତା, ବାବୁଭୟା ମାନଙ୍କର ଆବଶ୍ୟକତା ଭିତିକରି ଲେଖାମାନ ବିଭିନ୍ନ ସଂବାଦପତ୍ରରେ ପ୍ରକାଶିତ ହୋଇଥିଲା । ସେସବୁକୁ ଏକତ୍ରୀତ କରି ଏହି କ୍ଷୁଦ୍ର ପୁସ୍ତିକାଟି ପ୍ରସ୍ତୁତ କରାଯାଇଛି । ଆଶା ଓ ବିଶ୍ୱାସ ଏହି ଆଧାରରେ ବସ୍ତି ବାସିନ୍ଦାମାନେ ସାମୟିକ ଲୋଭରୁ ମୁକ୍ତହୋଇ ସମସ୍ୟାର ସ୍ଥାୟୀ ପ୍ରତିକାର ନିମନ୍ତେ ଏକତ୍ରୀତ ହେବେ । ସଂଗ୍ରାମ ପାଇଁ ପ୍ରସ୍ତୁତ ହେବେ । ଧମକ ନ ଶୁଣି ଧମକ ଦେବାକୁ ଶକ୍ତି ସଂଗଠିତ କରିବେ । ସମସ୍ତ ସ୍ୱେଚ୍ଛାସେବୀ ଓ ସମାଜସେବୀ ସଂଗଠନ ଏହି ପୁସ୍ତକ ପଢ଼ିବେ ଓ ରାଜନେତାମାନଙ୍କର ଶସ୍ତା ପ୍ରତିଶ୍ରୁତି ବା ରାଜନୈତିକ ଦଳର ଶସ୍ତା ଦାବୀ ପ୍ରସ୍ତୁତ ନକରି ଯାହା ବାସ୍ତବ ସମସ୍ୟାର ସ୍ଥାୟୀ ସମାଧାନ କରିପାରିବ ସେହିସବୁ ଯୁକ୍ତି ଉପସ୍ଥାପନ କରିବେ । ସେଥିପାଇଁ ଏଥିରେ ଥିବା ଯୁକ୍ତି ବା ପ୍ରସ୍ତାବ ସବୁ ଅଧ୍ୟୟନ କରିବା ସହିତ ସୁଚିନ୍ତିତ ପରାମର୍ଶ ମଧ୍ୟ ଯୋଗ କରିବାର ଉଦ୍ୟମ କରିବେ ।

'ଗ୍ରାମ୍ୟ' ସାମାଜିକ ବ୍ୟବସ୍ଥା ବଦଳୁଛି । ସହର ବା ନଗର ସମାଜ ବ୍ୟାପକରୁ ବ୍ୟାପକ ହେବାରେ ଲାଗିଛି । ସେହି ପରିବର୍ତ୍ତନକୁ ଲକ୍ଷ୍ୟ ରଖି ସମସ୍ତ ଚିନ୍ତା ସଜାଡ଼ିବାର ବେଳ ଉପସ୍ଥିତ ହେଲାଣି ।



# ସୂଚୀପତ୍ର

# ନଗର ଉନ୍ନୟନରେ କେନ୍ଦ୍ର ଓ ରାଜ୍ୟ ଯୋଜନା

ସହର ବା ନଗରାଞ୍ଚଳରେ ବସବାସ କରୁଥିବା ସବୁବର୍ଗର ସମସ୍ୟା ଲାଘବ ଉଦ୍ଦେଶ୍ୟରେ କେବଳ ରାଜ୍ୟସ୍ତରୀୟ ଉଦ୍ୟମ ବା ଯୋଜନା ହୋଇଥାଏ ତା ନୁହେଁ କେନ୍ଦ୍ର ସରକାର ମଧ୍ୟ ଏ ସଂପର୍କରେ ଅନେକ ଉନ୍ନୟନମୂଳକ ଯୋଜନାମାନ କରି ଆସିଛନ୍ତି । ବିଶେଷତଃ ୧୯୯୦ ପରବର୍ତ୍ତୀ ସରକାରମାନେ ଏ ଦିଗରେ ଅଧିକ ଧ୍ୟାନ ଦେଇ ଆସିଛନ୍ତି । ଅନେକ କେନ୍ଦ୍ରୀୟ ପ୍ରବର୍ତ୍ତୀତ ଯୋଜନାରେ କେନ୍ଦ୍ର ତାର ଅଂଶ ଖଟାଇବାରେ ଆଗ୍ରହ ଦେଖାଇଛି ।

ପୂର୍ବରୁ ଛୋଟବଡ଼ ଆର୍ଥିକ ସହାୟତା କେନ୍ଦ୍ରରୁ ଅବା ରାଜ୍ୟରୁ ଏହିସବୁ ସହରାଞ୍ଚଳ ବା ନଗରପାଳିକାମାନଙ୍କୁ ମିଳୁଥିଲା । ସେମାନେ ଅନେକ ବ୍ୟୟବରାଦ ନିଜ ଉପାର୍ଜିତ ଆୟ ବା ବିଭିନ୍ନ ଟିକସ୍ ଧାର୍ଯ୍ୟକରି, ସେସବୁ ହେଉଥିବା ଆୟରୁ କରି ଆସୁଥିଲେ । ଏଥିସହିତ ବିଭିନ୍ନ ବିନିଯୋଗକାରୀ ସଂସ୍ଥା ଯଥା ଜୀବନ ବୀମା କର୍ପୋରେସନ୍ (L.I.C) ଋଣ ଆଣି ଉନ୍ନୟନ କାର୍ଯ୍ୟ କରୁଥିଲେ । ୭୩ ଓ ୭୪ ତମ ସଂଶୋଧନ ପରେ ନଗରାଞ୍ଚଳ ପାଇଁ ଅନୁଦାନ ବ୍ୟବସ୍ଥା କେନ୍ଦ୍ରୀୟ ଅର୍ଥ କମିଶନଙ୍କ ଦାୟିତ୍ୱ ଅନ୍ତର୍ଭୁକ୍ତ ହୋଇଗଲା ଏବଂ  କେନ୍ଦ୍ର ସରକାର ଅନେକ ଯୋଜନା ପ୍ରବର୍ତ୍ତନ (କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା) ମାନ ପ୍ରସ୍ତୁତ କଲେ । ରାଜ୍ୟ ସରକାର ମଧ୍ୟ ରାଜ୍ୟସ୍ତରୀୟ ଅର୍ଥ କମିଶନ ଗଠନ କରିବାରୁ ବାଧ୍ୟ ହେଲେ ଓ ଅନୁଦାନ ସମେତ ଆର୍ଥିକ ବଣ୍ଟନ (devolution) ର ବ୍ୟବସ୍ଥାମାନ କଲେ ।

କେନ୍ଦ୍ର ସରକାରଙ୍କ ପ୍ରବର୍ତ୍ତିତ ଯୋଜନା ପ୍ରଥମେ ନଗରାଞ୍ଚଳରେ ସଫେଇ କର୍ମଚାରୀମାନଙ୍କ (Scavengers) ପାଇଁ ଆରମ୍ଭ ହୋଇଥିଲା । ଏମାନଙ୍କ ବାସସ୍ଥଳୀ ନିର୍ମାଣ ନିମନ୍ତେ ଘର ଯୋଗାଇବା ଯୋଜନା ଡକ୍ଟର ଆମ୍ବେଦକରଙ୍କ ନାମରେ ଯୋଜନା କରାଗଲା । ଅନ୍ୟଏକ ବାଲ୍ମିକୀ ଆବାସ ଯୋଜନା ମଧ୍ୟ କାର୍ଯ୍ୟକାରୀ ହେଉଥିଲା । ସବୁଠାରୁ ବଡ଼ ଯୋଜନା ଜବାହାରଲାଲ୍ ନେହେରୁ ନ୍ୟାସ୍‌ନାଲ୍ ଅର୍ବାନ୍ ରିନିଓ୍ୱାଲ (JNNURM) ୨୦୦୫ରେ ଆରମ୍ଭ ହେଲା । ଏଥିରେ ବସ୍ତିବାସିନ୍ଦାଙ୍କ ବସ୍ତୀ ଉନ୍ନୟନ କାର୍ଯ୍ୟକୁ (Integrated Housing and slum Development) ଅଗ୍ରାଧିକାର ଦିଆଯାଇଥିଲେ ମଧ୍ୟ ସହରାଞ୍ଚଳ ଦରିଦ୍ରଙ୍କ ମୌଳିକ ସୁବିଧା ସୁଯୋଗ

(Basic service to the urban poor- BSVP) ବ୍ୟବସ୍ଥା ଯୋଡ଼ା ହୋଇଥିଲା । ସାମାଜିକ ସୁରକ୍ଷା, ଶିକ୍ଷା ଓ ସ୍ୱାସ୍ଥ୍ୟ ବ୍ୟବସ୍ଥା ମଧ୍ୟ ଥିଲା । ଏହି ଯୋଜନାରେ ୨୦୦୫ ମସିହାରେ ଆରମ୍ଭ ହୋଇ ୨୦୧୨ ସୁଦ୍ଧା ଚାଲିବାର ଥିଲା । ତେବେ ସମୟସୀମା ଦୁଇଟି ପର୍ଯ୍ୟାୟରେ ୨୦୧୫ ସୁଦ୍ଧା ବଢ଼ିଥିଲା ଓ ଏଥିରେ ମୋଟ ୨୦ବିଲିନ ଡଲାର ବ୍ୟୟ ହୋଇଥିଲା । ଯଦଓ ୪୦ ବିଲିୟନ ଡଲାର ଖର୍ଚ୍ଚପାଇଁ ଲକ୍ଷ୍ୟଧାର୍ଯ୍ୟ ହୋଇଥିଲା, ପରବର୍ତ୍ତୀ କାଳରେ ଅର୍ଥାତ୍ ଶ୍ରୀଯୁକ୍ତ ନରେନ୍ଦ୍ର ମୋଦି ପ୍ରଧାନମନ୍ତ୍ରୀ ହେବାପରେ ଯାହାର ନାମ ପରିବର୍ତ୍ତନ କରାଯାଇ ଭିନ୍ନ ଏକ ନାମ (AMRUT) ରଖାଗଲା । ଏଥିରେ ୧୭ଗୋଟି ବି.ଏସ୍.ୟୁ.ପି. (B.S.U.P) ଉପଯୋଜନା ଓ ଅନେକ ଗୃହନିର୍ମାଣ ବ୍ୟବସ୍ଥା ଥିଲା । ଏହି ଯୋଜନାରେ ଦେଶରେ ମୋଟ ୨ ଲକ୍ଷ ଘର ନିର୍ମାଣର ଲକ୍ଷ୍ୟ ରଖା ଯାଇଥିଲା । ଘରଗୁଡ଼ିକ ବ୍ୟବହାର ଉପଯୋଗୀ ନହେବା ଫଳରେ ୨୦୧୬ ଅଗଷ୍ଟ ୩ ତାରିଖ ସୁଦ୍ଧା ୨୦% ଘର ଖାଲି ରହିଥିବା ଦେଖାଗଲା । ଏହି ଯୋଜନାରେ ପ୍ରତ୍ୟେକ ନଗରପାଳିକାମାନେ ବସ୍ତିବାସିନ୍ଦାଙ୍କ ପାଇଁ ବାର୍ଷିକ ବ୍ୟୟ ଅଟକଳର ୨୫% ରଖିବେ ବୋଲି ନିର୍ଦ୍ଦେଶିତ ହେଲା । ସମସ୍ତ ଗୃହଯୋଜନା (Housing Projects)ରେ ଅନ୍ତତଃ ୨୫% ସଂରକ୍ଷଣ ରହିବା କଥା ମଧ୍ୟ କୁହାଯାଇଥିଲା ।

ସ୍ୱଳ୍ପ ଆୟକାରୀଙ୍କ ନିମନ୍ତେ ରାଜୀବ ଗୃହ ଋଣ ଯୋଜନା ଆରମ୍ଭ ହେଲା । ସୁଧ ରିହାତି ଥାଇ ଘର ଋଣ ଯୋଗାଇଦେବାର ବ୍ୟବସ୍ଥାହେଲା । ସ୍ୱଳ୍ପ ଆୟକାରୀମାନେ (EWS) ୧ଲକ୍ଷରୁ ୧.୬ ଲକ୍ଷ ପର୍ଯ୍ୟନ୍ତ ଋଣ ନେବେ । ଏଥିରେ ୩.୧ ଲକ୍ଷ ଉପଭୋକ୍ତା ବଛା ଯାଇଥିଲେ । ମାତ୍ର ବ୍ୟାଙ୍କମାନଙ୍କର ସହଯୋଗ ନ ମିଳିବାରୁ ଏହିକ କାର୍ଯ୍ୟକ୍ରମ ଅସଫଳ ହେଲା । ପରବର୍ତ୍ତୀ ଅବସ୍ଥାରେ ଋଣର ମାତ୍ରା ୫ଲକ୍ଷ ଟଙ୍କାକୁ ବଢ଼ିଥିଲା । ଏଥିସହିତ ମଧ୍ୟ ପୁନଃ ଅର୍ଥଯୋଗାଣ (Refinance Scheme) ରଖାଯାଇଥିଲା । ଏହି ୨୦୦୯ ମସିହାରେ ଘୋଷଣା ହେଲା ଓ ୨୦୧୦ରୁ କାର୍ଯ୍ୟକାରୀ ହେଲା । ଭୁବନେଶ୍ୱର ମ୍ୟୁନିସ୍‌ପାଲିଟି ଏହି କାର୍ଯ୍ୟକ୍ରମକୁ ବହୁ ବିଳମ୍ବରେ ଆରମ୍ଭ କରିଥିଲା । ଏହି ଯୋଜନା ୨୦୦୯ ରୁ ୨୦୧୪ ମଧ୍ୟରେ କାର୍ଯ୍ୟକାରୀ ହୋଇ ନୂଆ ଏନ.ଡ଼ି.ଏ ସରକାର ଆସିବାପରେ ବନ୍ଦ ହୋଇଗଲା । ଏହା ପରିବର୍ତ୍ତେ ପ୍ରଧାନମନ୍ତ୍ରୀ ଆବାସ ଯୋଜନା ୨୦୧୫ ରୁ କାର୍ଯ୍ୟକାରୀ ହେଲା । ଏହି ଯୋଜନାରେ ଲକ୍ଷ୍ୟ ହେଲା ଯେ ୨୦୨୨ ମସିହା ସୁଦ୍ଧା 'ସବୁ ବସ୍ତିବାସିନ୍ଦାଙ୍କୁ ଘର' ପ୍ରଧାନମନ୍ତ୍ରୀ ଆୱାସ ଯୋଜନାରେ ଦୁର୍ବଳ ଆୟକାରୀ ଯେଉଁମାନଙ୍କର ଆୟ ୩ଲକ୍ଷ ରୁ ୬ଲକ୍ଷ ମଧ୍ୟରେ

ଥିବ ସେମାନଙ୍କୁ ମିଳିବ ବୋଲି ନିର୍ଦ୍ଦେଶିତ ହେଲା । ଏଥିରେ ବିଦ୍ୟୁତ୍‌ଶକ୍ତି, ପାଣି ଓ ପରିମଳ ବ୍ୟବସ୍ଥା ୨୪ ଘଣ୍ଟା ମଧ୍ୟରେ ଯୋଗାଇବାର ପ୍ରତିଶ୍ରୁତି ମଧ୍ୟ ରହିଲା । ୨୦୧୬ ରୁ ଆରମ୍ଭ ହୋଇଥିବା ଏହି ଯୋଜନା ମଧ୍ୟ ଅନେକ ଭାବରେ ଅସଫଳ ଥିବାର ଲକ୍ଷ୍ୟ କରାଯାଇଛି ।

୨୦୧୪ରେ ଦେଶରେ ଶ୍ରୀ ମୋଦିଙ୍କ ପ୍ରଧାନମନ୍ତ୍ରିତ୍ୱରେ ପ୍ରତିଷ୍ଠିତ ନୂଆ ସରକାର ଆସିବାପରେ ନଗରାଞ୍ଚଳ ଉନ୍ନତିପାଇଁ ଅନେକ ଯୋଜନା ଘୋଷଣା କଲେ । ସେଥିମଧ୍ୟରେ ସ୍ମାର୍ଟସିଟି, ସ୍ୱଚ୍ଛଭାରତ ମିଶନ, ହୃଦୟ, ଅର୍ବାନ୍ ଟ୍ରାନ୍‌ସପୋର୍ଟ, ଦୀନଦୟାଲ ଅନ୍ତୋଦୟ ଯୋଜନା, ଜାତୀୟ ଜୀବିକା ନିର୍ବାହ ଯୋଜନା (National urban livelyhood programme) ଅମୃତ ଯୋଜନା ଆଦି ଅନ୍ତର୍ଭୁକ୍ତ । ଏତଦ୍‌ବ୍ୟତୀତ ଐତିହାସିକ ନଗରମାନଙ୍କ ପାଇଁ ଗୋଟିଏ ଯୋଜନା (Heritage City Development) ଘୋଷଣା କରିଛନ୍ତି । ନଗର ବା ସହର ଭିତର ବାସିନ୍ଦାଙ୍କ ସଂଖ୍ୟାବୃଦ୍ଧି ରୋକିବା ପାଇଁ ସହରତଳି ଅଞ୍ଚଳରେ ଛୋଟଛୋଟ ସହର (Satelite Town) ସୃଷ୍ଟି କରିବାର ଯୋଜନା ଘୋଷଣା କଲେ ।

କେନ୍ଦ୍ରୀୟ ସ୍ତରରେ କେବଳ ନୁହେଁ, ରାଜ୍ୟସ୍ତରରେ ମଧ୍ୟ ଅନେକ ଯୋଜନା ଘୋଷଣା କରାଯାଇଛି । ବିଜୁ ପଟ୍ଟନାୟକ ଆବାସ ଯୋଜନା, ବିଦ୍ୟୁତ୍ କରଣ ଯୋଜନା, ଜାଗା ମିଶନ ଆଦି ଘୋଷିତ ହୋଇଛି । ମ୍ୟୁନିସିପାଲିଟି ମାନଙ୍କର ବାର୍ଷିକ ଆୟ ବୃଦ୍ଧି ଘଟିଛି ଓ ବଜେଟ୍ ଅଟକଳ ମଧ୍ୟ ବର୍ଷକୁ ବର୍ଷ ବଢ଼ିବାରେ ଲାଗିଛି । ମାତ୍ର ସବୁଠାରୁ ବଡ଼ ଦୁଃଖ ଓ ପରିତାପର ବିଷୟ ହେଉଛି ଯେ ବସ୍ତିବାସିନ୍ଦା ବା ସ୍ୱଳ୍ପ ଆୟକାରୀଙ୍କ ଅବସ୍ଥାର ପରିବର୍ତ୍ତନ ଲକ୍ଷ୍ୟ କରାଗଲା ନାହିଁ । ଓଡ଼ିଶାରେ ଚିହ୍ନିତ ହୋଇଥିବା ୧୯୨୨ଟି ବସ୍ତିର ଅବସ୍ଥା ପୂର୍ବପରି ରହିଛି । ରାଜ୍ୟସରକାର ଘୋଷଣା କରିଛନ୍ତି ଯେ ନଗରାଞ୍ଚଳର ବସ୍ତିରେ ଥିବା ୧ ଲକ୍ଷ ୮୬ ହଜାର ପରିବାରକୁ ୨୦୨୨ ମସିହା ସୁଦ୍ଧା ଜମି ପଟ୍ଟା ଯୋଗାଇ ଦିଆଯିବ । ସହର ବଢ଼ିବା ସଂଗେ ସଂଗେ ଏମାନଙ୍କ ସଂଖ୍ୟା ବଢ଼ି ଚାଲିବ । ୨୦୧୮ ଅଗଷ୍ଟ ସୁଧା ମାତ୍ର ୨୦୦୦ ପରିବାରଙ୍କ ଜମି ପଟ୍ଟା ଦିଆ ଯାଇଥିବା ଜଣାଯାଏ । ତେବେ ଏ ମଧ୍ୟରେ ନଗରାଞ୍ଚଳ ନିର୍ବାଚନ ଓ ସାଧାରଣ ନିର୍ବାଚନରେ ଲୋକେ ଭୋଟ ଦେବାକୁ ଆସି ସାରିଥିବେ । ପୁଣି ଏକ ଲାଭ ଲୋଭର ବଣ୍ଟନ ପ୍ରକ୍ରିୟା ବିଜ୍ଞାପିତ ହୋଇଛି । ସମସ୍ୟାର ସମାଧାନ ନୁହେଁ, ବୃଦ୍ଧି ଘଟିବାର ଅନ୍ତ ନାହିଁ ।



# ସମସ୍ୟା ନଜାଣି ଯୋଜନା

ଆମ ରାଜ୍ୟରେ ଗୋଟିଏ ବଡ଼ କଥା ଦେଖିବାକୁ ମିଳେ ଯେ ଅନେକ ଅର୍ଥବ୍ୟୟରେ ହେଉଥିବା ଯୋଜନା ସବୁ ହୁଏତ ଠିକ୍ ସମୟରେ ଶେଷ ବା କାର୍ଯ୍ୟକାରୀ ହୋଇ ନଥାଏ ଅବା ଫଳପ୍ରଦ ହୁଏ ନାହିଁ । ଯଦି କାଁ ଭାଁ ଫଳପ୍ରଦ ହୋଇଥାଏ ତାହା ଆଂଶିକ । ଏ ସବୁର କାରଣ ହେଉଛି ନିଷ୍ଠା ଓ ଆନ୍ତରିକତାର ଅଭାବ ଓ ଯୋଜନାକାରୀମାନଙ୍କର ସମସ୍ୟା ସହିତ ଆଦୌ ସଂପର୍କ ବା ଅଧ୍ୟୟନ ନାହିଁ । ଏହି ଯୋଜନାକାରୀମାନେ ଶୀତତାପ ନିୟନ୍ତ୍ରିତ ଘରେ ବସି ସମସ୍ୟାର ଆକଳନ କରିଥାନ୍ତି ଓ ଅତ୍ୟନ୍ତ ଖାମଖିଆଲରେ ଅର୍ଥକୁ ଦେଖି ଯୋଜନା ପ୍ରସ୍ତୁତ କରିଥାନ୍ତି । ନକସା ଟାଣନ୍ତି ଡି.ପି. ଆର୍ (Detail Project Report) ପ୍ରସ୍ତୁତ କରନ୍ତି । ମାଷ୍ଟରପ୍ଲାନ୍ କରନ୍ତି । ଏହି ଲେଖକଙ୍କର ଗୋଟିଏ ଘଟଣା ସ୍ମରଣ ଅଛି । ସେ ଏକଦା ନିଜ ଅଞ୍ଚଳର ନଦୀ ଅତଡ଼ା (କନ୍ଦଳ ନଦୀର ଧାନମଣ୍ଡଳ) ଖାଇଯାଇଥିବା ଘଟଣାକୁ ନେଇ ସେ ସମୟର ଜଣେ ଇଣାଗୁଣା ଦକ୍ଷ ଜଳ ସଂପଦ ବିଭାଗର ଉପମୁଖ୍ୟ ଇଂଜିନିୟରଙ୍କୁ ଭେଟିବାକୁ ଯାଇଥିଲେ । ଏହା ହେଉଛି ୧୯୭୪ ମସିହାର କଥା । ସେ ସମୟରେ ସେ ଅଞ୍ଚଳର ଲୋକ ପ୍ରତିନିଧି ସୁଧାଂଶୁବାଳା ରାୟ ଥିଲେ ଓ କଣ୍ଟାପଡ଼ାର ଚେୟାରମ୍ୟାନ ଥିଲେ ଶ୍ରୀ ମହେନ୍ଦ୍ର ପରିଡ଼ା । ଏମାନଙ୍କ ଉପସ୍ଥିତିରେ ଗୋଟିଏ ନଦୀ ଅତଡ଼ା ଖାଉଥିବା ସଂପର୍କରେ କଥା ହେବାବେଳେ ଇଂଜିନିୟର ଶ୍ରୀ ଆର୍.କେ. ସାହୁ କହିଲେ ଏଠାରେ ତିନିଗୋଟି ଅତଡ଼ା ରକ୍ଷାକାରୀ ବୁଡ଼ା ପଥରବନ୍ଧ ବା ବୁଡ଼ା ଗୁରୁଜ ନିର୍ମାଣ ହେବ । ମାତ୍ର ସେ ସମୟରେ ଇଞ୍ଜିନିୟରିଂ କମିଟି (T.A.C) ତିନିଗୋଟି ଉଚ୍ଚଗୁରୁଜ ନିର୍ମାଣ ନିମନ୍ତେ ପ୍ରସ୍ତାବ ଗ୍ରହଣ କରିଥିବା ଏ ଲେଖକ ଜାଣିଥିଲେ । ଲେଖକ ଏହି ପ୍ରସ୍ତାବ ଇଞ୍ଜିନିୟର ଶ୍ରୀ ସାହୁଙ୍କ ନିକଟରେ ରଖିଥିଲେ । ଇଂଜିନିୟର ସାହୁ ଖୁବ୍ ଉତ୍‌କ୍ଷିପ୍ତ ହୋଇ ଉଠିଥିଲେ । ଚୂନା ଯେତିକି ଅଛି ସେଇଥିରେ ପିଠା ହେବ । ହଠାତ୍ ଲେଖକ କହିବାକୁ ବାଧ୍ୟ ହେଲେ ଯେ କପଡ଼ା କମ୍ ଥିଲେ ସେହି ଅନୁସାରେ କୋର୍ଟ କଟାଯିବ ନା କ'ଣ ? କୋଉ କାମକୁ ପାଇବ ନାହିଁ । ଅଯଥା ଅର୍ଥବ୍ୟୟ ହେବ । ଶ୍ରୀ ମହେନ୍ଦ୍ର ପରିଡ଼ା ହଠାତ୍ କହିପକାଇଲେ ପାଖରେ ପଇସା ନାହିଁ ବୋଲି ଧୋତି ବଦଳରେ ଲୁଙ୍ଗି କିଣି କାହାକୁ ଦିଆଯାଏ ନାହିଁ । ଶ୍ରୀ ସାହୁ ରାଗିଯାଇ ଉଠି ଯାଇଥିଲେ । କିନ୍ତୁ ଟେଣ୍ଡର ହେଲା

ଟି.ଏ.ସି. ଆପ୍ରୁଭାଲ୍ ଅନୁସାରେ । ଆଜିକାଲି ସେପରି ଇଂଜିନିୟର ଦେଖିବାକୁ ମିଳୁ ନାହାନ୍ତି ବା ବିଚାର ନାହିଁ ଅବା ଅନୁଭବ ନାହିଁ । ଅବା କାହାକଥା ଶୁଣିବାକୁ ନାହିଁ । କେବଳ ପଇସାଗୁଡ଼ାଏ ଅଛି ବା ଯାହା କହିଦେଲେ ଲୋକେ ସେହି ସମୟପାଇଁ ଖୁସି ହେବେ, ସେହିପରି କାର୍ଯ୍ୟକ୍ରମ ଓ ଯୋଜନାମାନ ଘୋଷଣା ହେଉଥିବାର ଦେଖାଯାଉଛି । ଏହିସବୁ ଯୋଜନା ଅନେକ ସମୟରେ ବାହାର ଲୋକଙ୍କ (Out sourcing) ଦ୍ୱାରା ପ୍ରସ୍ତୁତ ହେବା ଆରମ୍ଭ ହେଉଛି । ସେମାନେ ଦକ୍ଷ ଇଂଜିନିୟର ବା ଅର୍ଥ ସଞ୍ଚାଳନକାରୀ ହୋଇପାରନ୍ତି । ସେମାନଙ୍କର 'କ୍ଷେତ୍ର' ସଂପର୍କ ଆଦୌ ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । ଯେଉଁଥିପାଇଁ ସମସ୍ୟା ସମାଧନା ନ ହୋଇ ଉତ୍କଟ ହେଉଥିବା ସହିତ ବଜେଟ୍ ବ୍ୟୟ ବରବାଦ ହେଉଥିବା ଦେଖା ଯାଉଛି ।

ଏବେ ରାଜ୍ୟରେ ଗୋଟିଏ ଆଇନ ପ୍ରଣୟନ ହୋଇଛି । ତାହା ହେଉଛି ବସ୍ତି ବାସିନ୍ଦାଙ୍କ ଭୂମି ଅଧିକାର ଅଧିନିୟମ - ୨୦୧୭ । ସେହି ଆଧାରରେ ସହରାଞ୍ଚଳ ନିର୍ବାଚନ ପୂର୍ବରୁ ପଟାବଣ୍ଟନ ଉତ୍ସବ ମଧ୍ୟ ଆରମ୍ଭ ହୋଇଗଲାଣି । ଏହି ଆଇନ ଓ କାର୍ଯ୍ୟକ୍ରମ ନିଷ୍ପତି ନେଇଥିବା ସମସ୍ତ ବ୍ୟକ୍ତି ଅଳ୍ପ କିଛିକ୍ଷଣ ପାଇଁ ବସ୍ତିବାସିନ୍ଦାଙ୍କ ସମସ୍ୟା ଓ ତାକୁ ନେଇ ଉପୁଜୁଥିବା ସମସ୍ୟା ସଂପର୍କରେ ଚିନ୍ତା କେବେ ହିଁ କରି ନଥିବେ ବୋଲି ଅନୁମାନ କରାଯାଏ । କାରଣ ପ୍ରଣୀତ ଆଇନଟି ଆଦୌ ବସ୍ତିବାସିନ୍ଦାଙ୍କ ସ୍ଥାୟୀ ସମସ୍ୟା ସମାଧାନର ସହାୟକ ନୁହେଁ । ସେମାନେ ମଧ୍ୟ ଅନୁଧ୍ୟାନ କରି ନାହାନ୍ତି ଯେ ଉପାସରକାର ସମୟରେ ନଗରାଞ୍ଚଳରେ ପାଖାପାଖି ୨ ଲକ୍ଷ ଛୋଟଘର (Low cost Housing) ଦୀର୍ଘଦିନ ଧରି ଦିଆଯାଇ ପାରିଲାନାହିଁ । ଯଦି ୨୦୧୮ ମସିହା ଜୁନ୍ ଶେଷସୁଦ୍ଧା ଶେଷ ହୋଇଥିବା ୧.୬୪ ଲକ୍ଷ ଘର ବିଭିନ୍ନ ରାଜ୍ୟରେ ବଣ୍ଟା ନଯାଇ ଖାଲି ରହିଥିବା ଦେଖାଗଲା । କିଛି ଘର ଲୋକଙ୍କ ଅନିଚ୍ଛାସତ୍ତ୍ୱେ ଦିଆଗଲା । ସେମାନେ ତାକୁ ନେଲେ ଓ ବସ୍ତିରେ ବି ରହିବାର ଦେଖାଗଲା ।

ବର୍ଦ୍ଧିଷ୍ଣୁ ସହରାଞ୍ଚଳରେ ଗଢ଼ିଉଠୁଥିବା ବସ୍ତି ଓ ଏଥିରେ ଗୁଣ୍ଡ ହେଉଥିବା ବ୍ୟକ୍ତି ବା ପରିବାର ଅନେକାଂଶରେ ସ୍ଥାୟୀବାସିନ୍ଦା ନୁହଁନ୍ତି । କେବଳ ସଫେଇ କର୍ମଚାରୀଙ୍କୁ ଛାଡ଼ି ଅନେକ ରୋଜଗାର ଅନ୍ୱେଷଣରେ ଆସି ଜମା ବାନ୍ଧିଥାନ୍ତି । ସେହି ଜମା ବାନ୍ଧିଥିବା ଗୋଷ୍ଠୀ ଭିତରୁ କିଛି କ୍ରମେ କ୍ରମେ ସ୍ଥାୟୀ କର୍ମକ୍ଷେତ୍ର ଦେଖି ରହି ଯାଇଥାନ୍ତି । ଏହି ସ୍ୱଳ୍ପ ଆୟକାରୀମାନଙ୍କ ମଧ୍ୟରେ ବିଶେଷତଃ ସହରରେ ଘୂରି ବୁଲୁଥିବା ଫେରିବାଲା ଶ୍ରେଣୀ ଯଥା ମୁଡ଼ି, ଦହିବରା, ଗୁପଚୁପ୍ ବିକାଳୀ, ରିକ୍ସା, ହାତଟଣା

ଟ୍ରଲି, ଅଟୋରିକ୍ସା ବା ଟ୍ୟାକ୍‌ସି ଚାଳକ ଶ୍ରେଣୀ ଥା'ନ୍ତି । ଅନ୍ୟ କିଛି ସହରର ଆବଶ୍ୟକତା ଭିତ୍ତିକ ସେବା ଯୋଗାଣକାରୀ ଯଥା ଲୁଗା ସଫାକାରୀ, ସେଲୁନ୍ କର୍ମଚାରୀ, ଘରେ କାମ କରୁଥିବା ନିତିଦିନିଆ ମହିଳା କର୍ମଚାରୀ ଓ ସଫେଇ କର୍ମଚାରୀ ଆଦି ଥା'ନ୍ତି । ଆଉ ଏକ ଗୋଷ୍ଠୀ ସହରରେ ପ୍ରତିଦିନ ଗଢ଼ି ଉଠୁଥିବା ରାସ୍ତା, କୋଠାବାଡ଼ିର ନିର୍ମାଣ ଶ୍ରମିକ । ଏମାନେ ରାଜମିସ୍ତ୍ରୀ, ରଙ୍ଗମିସ୍ତ୍ରୀ, ଟାଇଲ୍‌ମିସ୍ତ୍ରୀ, ପାଇପ୍‌ମିସ୍ତ୍ରୀ ଏବଂ ସେମାନଙ୍କର ସହାୟକ ଗଣ । ଏମାନେ ମୁଖ୍ୟତଃ ଅସ୍ଥାୟୀ । କାମ ସରିଲେ ବାହୁଡ଼ି ଯାଇଥାନ୍ତି । ଅନ୍ୟ ଏକ ଶ୍ରେଣୀର ଲୋକେ ଆତଯାତ ହୁଅନ୍ତି, ସେମାନେ ସମସ୍ତେ କ୍ଷୁଦ୍ର ବ୍ୟବସାୟୀ ଭାବେ ପରିଚିତ । ସେମାନଙ୍କ ମଧ୍ୟରେ ଦୁଗ୍ଧ ବ୍ୟବସାୟୀ ଥା'ନ୍ତି । ସହର ଗଢ଼ି ଉଠିଥିବା ସମୟରେ କେବଳ ସଫେଇ କର୍ମଚାରୀ ବଂଶାନୁକ୍ରମେ ରହି ଆସିଛନ୍ତି ଓ ଏମାନେ ପ୍ରାୟତଃ ସ୍ଥାୟୀ ବାସିନ୍ଦା ଅଟନ୍ତି । ଏମାନେ ଦୁଇଶ୍ରେଣୀର ଯଥା- ମଇଳା ସଫା କାର୍ଯ୍ୟ କରନ୍ତି ଓ ରାସ୍ତା, ଡ୍ରେନ୍ ସଫା କରୁଥିବା ସଫେଇ କର୍ମଚାରୀ ଭାବେ କାର୍ଯ୍ୟ କରି ଆସୁଛନ୍ତି । ଏବେ ସରକାରଙ୍କ ନିଷ୍ପତି ଅନୁସାରେ ମଇଳା ବୋହିବା ବର୍ଗ ଉଚ୍ଛେଦ ଦେବାରେ ଲାଗିଛନ୍ତି । ତଥାପି ସେମାନେ ଯେ ଦେଶର ସଂପୂର୍ଣ୍ଣ ଉଚ୍ଛେଦ ହେଲେଣି ତା' ନୁହେଁ । ଏବେବି କିଛି କିଛି କାମରେ ଅଛନ୍ତି । ଏମାନଙ୍କ ପାଇଁ ପୂର୍ବରୁ ଆମ୍ବେଦକର ଆବାସ ଯୋଜନା ନାମରେ ଯାହା କରାଯାଇଛି ସେହି ସବୁ ଛୋଟଘର ସଭ୍ୟଭାବରେ ବଂଚିବାର ଆବଶ୍ୟକତା ମେଣ୍ଟି ନଥାଏ ।

ମୋଟାମୋଟିଭାବେ ଏହିସବୁ ବର୍ଗର ବ୍ୟକ୍ତିଙ୍କ ସମେତ ବିଭିନ୍ନ ଭାବରେ ସ୍ୱଚ୍ଛ ବେତନଭୋଗୀ ବେସରକାରୀ କର୍ମଜୀବୀ ଶ୍ରେଣୀ, ଯଥା- ସିକ୍ୟୁରିଟି କର୍ମଚାରୀ, ଗାଡ଼ି ଡ୍ରାଇଭର, ଦୋକାନରେ ଖଟୁଥିବା ଲୋକ ଆଦି ସ୍ଥାୟୀ ବା କ୍ଷୁଦ୍ର ବ୍ୟବସାୟୀଭାବେ ସହରରେ ଆଶ୍ରୟ ନେଇଥାନ୍ତି ଓ ବିଛାଡ଼ି ହୋଇ ରହିଥାନ୍ତି । ବସ୍ତି ବାସିନ୍ଦାଙ୍କର ମୋଟାମୋଟି ପରିଚୟ ହେଲା ଯେ ସେମାନେ ସ୍ୱଳ୍ପ ଆୟକାରୀ । ଦିନ ମଜୁରୀଆ ସହରାଞ୍ଚଳରେ ମୋଟା ଅଙ୍କଦେଇ ଘରଭଡ଼ା ନେଇ ରହିବାର କ୍ଷମତା ନାହିଁ । ସେମାନେ ଯୌଥ ପରିବାରର ଜୀବନ ଅତିବାହିତ କରିଥାନ୍ତି, ଅର୍ଥାତ୍ ପରିବାରର ସଦସ୍ୟମାନଙ୍କ ସହ ରହିଥାନ୍ତି । ସେମାନଙ୍କ ମଧ୍ୟରେ ଅସ୍ଥାୟୀ ଶ୍ରମଜୀବୀମାନେ ମଧ୍ୟ ଅଛନ୍ତି । କାମ ସରିଲେ ଫେରିଯା'ନ୍ତି । ପରିବାର ଧରି ରହିବାର ଆବଶ୍ୟକତା ନଥାଏ । ସମସ୍ତେ କିନ୍ତୁ ବସ୍ତି ଭିତରେ ସ୍ଥାୟୀଭାବେ ବା ଅସ୍ଥାୟୀଭାବେ ଅନ୍ୟଠାରୁ ଘରଭଡ଼ା ନେଇ ରହିଥାନ୍ତି । ଏମାନଙ୍କର ଆବଶ୍ୟକତା ଉପରେ ଦୃଷ୍ଟିରଖି ବସ୍ତି ସଜାଡ଼ିବା ଦରକାର । କିଛି

ପରିମାଣରେ ଗୋଷ୍ଠୀ ରହଣୀସ୍ଥଳୀ (Short Stay Home) ଯେଉଁଥିରେ ବଖୁରିଆ ଘର ସହିତ ଛୋଟ ପାଇଖାନା ଓ ରୋଷେଇ ଘର ରହି ଦୈନିକ ବା ସାପ୍ତାହୀକ ଭଡ଼ା ସୂତ୍ରରେ ଆଶ୍ରୟସ୍ଥଳୀ ଯୋଗାଇ ଦେଲେ ସେମାନଙ୍କ ଆବଶ୍ୟକତା ମେଣ୍ଟିଯାଏ ।

କିନ୍ତୁ ଅନ୍ୟ ସେବାକାରୀ ଓ କ୍ଷୁଦ୍ର ବ୍ୟବସାୟୀ ତଥା ଆୟକାରୀମାନଙ୍କ ପାଇଁ ସୁସ୍ଥ ବାତାବରଣ ସହିତ ସଭ୍ୟ ଭାବରେ ଯୌଥ ପରିବାର (ଶ୍ରମଜୀବୀ, ତାର ସ୍ତ୍ରୀ, ପିଲା ଓ ବୃଦ୍ଧ ପିତାମାତା) ରହିବାଭଳି 'ଆବାସ' ଯୋଗାଇ ଦେବା ନିହାତି ଜରୁରୀ । ସେମାନେ କ'ଣ ଏଠାରେ ସ୍ଥାୟୀଭାବେ କାଳାତିପାତ କରିବେ । ଜଣେ ଛୋଟ ସେଲୁନ୍‌ର ଅଧିକାରୀ ବା ସେଲୁନ୍‌ରେ କାର୍ଯ୍ୟରତ ବ୍ୟକ୍ତି ପରବର୍ତ୍ତୀ ଅବସ୍ଥାରେ ଗୋଟିଏ ବିୟୁଟି ପାର୍ଲର ବା ମ୍ୟାସେଜ୍ ସେଣ୍ଟର ଖୋଲିବା ପରେ ବା ତା' ପୁଅ ଉଚ୍ଚଶିକ୍ଷିତ ହୋଇ ଅନ୍ୟତ୍ର ମୋଟା ଅଙ୍କରେ ଚାକରୀ କରିପାରେ । ସେହିପରି ସବୁ ବସ୍ତିବାସିନ୍ଦା ଯେ ସେହି ସ୍ୱଳ୍ପ ଆୟକାରୀ ଗୋଷ୍ଠୀର ପୁରୁଷ ପୁରୁଷ ଧରି କାଳାତିପାତ କରିବେ, ସେପରି ଭାବୁଥିବା ପ୍ରତ୍ୟେକ ବ୍ୟକ୍ତି ହୁଏତ ଏମାନଙ୍କ ଉତ୍‌ଥାନ ଚାହାନ୍ତି ନାହିଁ ଅବା ଏମାନଙ୍କ ସଂପର୍କରେ ଲୋକ ଦେଖାଣିଆ ଶସ୍ତା ବିକାଶର କଥା କହିଥାନ୍ତି ।

ଏହି ବସ୍ତି ବାସିନ୍ଦାଙ୍କର ବୃତ୍ତି (Occupation) କୁ ଲକ୍ଷ୍ୟ ରଖି ଗୃହର ମାଲିକାନା ଅଥବା ସାମୟିକ ଭଡ଼ା(Occupier) ଭାବେ ଚିହ୍ନିତ ହେବା ଏବଂ ସେହି ଘର ଉପରେ ଅଧିକାର ଦେବା (Occupancy Right) ବ୍ୟବସ୍ଥା ଅତ୍ୟନ୍ତ ଜରୁରୀ । ସେହି ଅନୁସାରେ ନିୟମ ବା ଅଧିନିୟମ ପ୍ରସ୍ତୁତ ହେବା ଦରକାର । ଅର୍ଥାତ୍ ଯେଉଁ ପର୍ଯ୍ୟନ୍ତ ବୃତ୍ତିରେ ଥିବେ ସେ ପର୍ଯ୍ୟନ୍ତ ଅବା ତାଙ୍କର ମୃତ୍ୟୁପର୍ଯ୍ୟନ୍ତ ଏହି ଘରର ମାଲିକାନା ରହିବ, ଅବା ଅନ୍ୟତ୍ର ଗଲେ ଏହି ଘର ବା ଜମିର ଅଧିକାର ରହିବ ନାହିଁ । ଏହି ଆଧାରରେ ସମସ୍ତ ଅଧିନିୟମ ଆଲୋଚନା ହେବା ଦରକାର ।



# ନଗର ସମସ୍ୟା : ବାବୁଙ୍କ ସୃଷ୍ଟି

ଦିନଥିଲା ଭୁବନେଶ୍ୱରରେ ବର୍ଷା ଉପଭୋଗ କରିବାପାଇଁ ମନ ଆନ୍ଦୋଳିତ ହେଉଥିଲା । ଲଗାଣ ବର୍ଷାର ଝରଝର ପାଣି ଘମାଘୋଟିଆ, ସବୁକିଛି ମିଶି ବେଶ୍ ଆନନ୍ଦ ଦେଉଥିଲା । ବର୍ଷା ପାଣିର ଛୋଟ ଝରଣାଟିଏ କଳା ମଚ୍‌ମଚ୍ ପିଚୁ ରାସ୍ତା କଡ଼ରେ ବୋହି ଯାଉଥିଲା । ଅବଶ୍ୟ ଗାଁର ଚାଳରୁ ଝରୁଥିବା ପାଣିର ଦୃଶ୍ୟ ଅବା ଆନନ୍ଦଦାୟୀ ଶବ୍ଦ ନଥିଲା । ହେଲେ କୁଲୁ କୁଲୁ ନାଦ ଆନମନା ଭାବୁକ ପଥିକକୁ କ୍ଷଣିକ ପାଇଁ ଅଟକାଇ ରଖୁଥିଲା । କେଇଟି ମୁହୂର୍ତ୍ତର ପାଣି କୁଆଡ଼େ ଉଭାନ ହେଇ ଯାଉଥିଲା । ଆଗେ କଟକରେ ରହିଆସୁଥିବା ବାବାମାନେ ରହିବାକୁ ସେଥିପାଇଁ ପସନ୍ଦ କରୁଥିଲେ । ଯେଉଁଥିପାଇଁ ଧାଡ଼ି ଧାଡ଼ି ସରକାରୀ ବାସଗୃହ ନିର୍ମାଣହେଲା ଓ ସେମାନେ ରହିଲେ । ବଦଳି ହେଲେ ମଧ୍ୟ ଛାଡ଼ିବାକୁ ଚାହୁଁ ନଥିଲେ । କାରଣ ଏଠି ପ୍ରଭାତ ସିନେମାହଲ ଘର ପଛପାଖ ବାଉଁଶ ପତର ଗଳି, ପଟା ପୋଲଠାରୁ ସମାଜ ଅଫିସ ପର୍ଯ୍ୟନ୍ତ ରାସ୍ତାରେ ଅସରାଏ କିମ୍ୱା ଦି ଅସରା ପାଣିରେ ସବୁକିଛି ଉବୁଟୁବୁ ହେଇଯାଉ ଥିବା ସ୍ଥିତି ନଥିଲା । ସେଠି ରିକ୍ସାର ଚକ ବୁଡ଼ି ଯାଉଥିଲା । ଚକ ଗଡୁ ନଥିଲା । ସାଇକେଲ ଟେକି ଟେକି ନେବାକୁ ପଡୁଥିଲା । ବକ୍‌ସିବଜାର ପ୍ରଭାତସିନେମା ଠାରୁ ଲମ୍ୱିଥିବା ନାଳର ଅସନାପାଣି କେଶରପୁର, ଗହ୍ମାଡ଼ିଆ, ସାନ୍ତସାହୀ, ପ୍ରଫେସରପଡ଼ାରେ ଥିବା ଘର ଦୁଆରେ ଆଣ୍ଠୁଏ ନର୍ଦ୍ଦମା ପାଣି ଛିଡ଼ାହେଇ ଯାଇଥିଲା । ଓଃ କି ଦୁର୍ଗନ୍ଧ ସେ ପାଣି । ସେଥିରେ ପଶି ଘରୁ ବାହାରିବାକୁ ହେଉଥିଲା । ଦୋଳମୁଣ୍ଡାଇ ଛକରୁ ମହତାବ ରୋଡ଼ ଦେଇ ଛତ୍ରବଜାର ପରିବା ବଜାରକୁ ଯିବା ଯେ କେତେ କଷ୍ଟକର ଥିଲା ତାହା କେବଳ ଅନୁଭବୀମାନେ ଜାଣନ୍ତି । ଯୋବ୍ରା ଅଞ୍ଚଳରେ ଅନେକଙ୍କ ଘର ଭିତରକୁ ବର୍ଷାପାଣି ପଶି ଯାଉଥିଲା । ତେଣେ ଚଣ୍ଡୀଛକପାଖ ଜିଲ୍ଲାପାଳଙ୍କ ଘର ହେଉ ଅବା ବିଜୁ ପଟ୍ଟନାୟକ ଛକ, ଦେଉଳସାହୀ, ତୁଳସୀପୁର ହେଉ ସବୁଜାଗାରେ ସମାନ ଅବସ୍ଥା । ବେଳେବେଳେ ସମାଜରେ ବର୍ଷା-ବନ୍ୟାର ଫଟୋ ଛପେ । ସରକାର କିମ୍ୱା ସମାଜ ତରଫରୁ ରିଲିଫ୍ ସହର ଭିତରେ ବଣ୍ଟାଯାଏ । ସେପରି ଅବସ୍ଥା ଭୁବନେଶ୍ୱରରେ ନଥିଲା । ପାଣିସବୁ ନାଳରେ ନାଳରେ ବୋହି ଯାଉଥିଲା । ରାସ୍ତାଘାଟ ଧୋଇଧାଇ 'ମାଣବସା' ଗୁରୁବାରରେ ଘର ସଫାର ପ୍ରତ୍ୟୟ ସୃଷ୍ଟି ହେଉଥିଲା । ବର୍ଷାପରର ଖରା ଖୁବ୍ ଆମୋଦଦାୟକ ଥିଲା । ସବୁଆଡ଼େ ଚିକ୍‌ଚିକ୍ । କେବଳ

ଗୋଟିଏ ପ୍ରକୃତିଦତ୍ତ ଭୟ ଥିଲା । ଖୁବ୍ ବଡ଼ ବଡ଼ ଗେଣ୍ଡା ମାଳମାଳ ହୋଇ ରାସ୍ତାରେ ବୁଲୁଥିଲେ ଓ ବେଳେବେଳେ ଘର ଭିତରକୁ ପଶି ଆସୁଥିଲେ । ବଡ଼ ବଡ଼ କଙ୍କଡ଼ା ବିଛା ବେଳେବେଳେ ବାହାରୁଥିଲେ । ହେଲେ ପରିଷ୍କାର ପରିଚ୍ଛନ୍ନ ରାସ୍ତା କଡ଼ରେ ହଠାତ୍ ଦୃଷ୍ଟିଗୋଚର ହେଉଥିଲେ ସେମାନଙ୍କ ଉପସ୍ଥିତି ଗତିବିଧି ବାରିହୋଇ ପଡୁଥିଲା । କଟକରେ ପୋକଯୋକ୍ ସାଲୁବାଲୁ ଘରଦୁଆର ପରିସ୍ଥିତି ଆଦୌ ଭୁବନେଶ୍ୱରରେ ନଥିଲା । ଏପରିକି କଟକ ସମେତ ଅନ୍ୟ ସହରର ବସ୍ତିବାସିନ୍ଦାଙ୍କ ପରି ବର୍ଷାଦିନେ ଏଠି ଏମିତି କିଛି ଖରାପସ୍ଥିତି ଦେଖିବାକୁ ମିଳୁ ନଥିଲା ।

ରାଜଧାନୀ ଭୁବନେଶ୍ୱର । ପ୍ରଶସ୍ତ ଅଞ୍ଚଳ । ପାହାଡ଼ିଆ ଭୂମି । ପାଣି ଗଡ଼ିଯାଏ ଅବା ଶୋଷି ହୋଇଯାଏ । ଖରାଦିନେ ମଧ ଭଲ ପବନ । ଚାରିପାଖେ ଘେରି ରହିଥିବା ଘଞ୍ଚ ଜଙ୍ଗଲ ବରୁଣେଇ, ଖଣ୍ଡଗିରି ଠାରୁ ନନ୍ଦନକାନନ ପର୍ଯ୍ୟନ୍ତ ଦେଇ ବୋହି ଆସୁଥିବା ପବନ ଶୀତଳ ଓ ଆରାମଦାୟକ ଥିଲା । ଶୀତଦିନେ ଆହୁରି ଅଧିକଭାବେ ନାତିଶୀତୋଷ୍ଣ ଜଳବାୟୁ । ପ୍ରଥମେ ଏହି ଜଙ୍ଗଲ ପାହାଡ଼ ଘେରା ଶବରପଲ୍ଲୀକୁ ବଡ଼ ବାବୁଭେୟାମାନେ ଆସିବାକୁ ଚାହୁଁ ନଥିଲେ । ହେଲେ ଭଲ ରାସ୍ତା- ଯୋଜନାନୁସାରେ ସବୁକିଛି ବ୍ୟବସ୍ଥା ଟାଣି ଆଣିଲା ସମସ୍ତଙ୍କୁ । ଏଠି ନଗର ସୃଷ୍ଟି ଆରମ୍ଭ ହେଲା । ବାପୁଜୀନଗର, ଖାରବେଳନଗର, ସତ୍ୟନଗର, ସହୀଦନଗର ମୁଣ୍ଡଟେକି ଉଠିଲା । କୋଠାବାଡ଼ି ଆକାଶ ଆଡ଼େ ଓ ଚାରିଦିଗକୁ ବଢ଼ି ଚାଲିଲା । ସରକାରୀ ବାବୁଭୟାମାନେ ଯୋଜନା ପରେ ଯୋଜନା ପ୍ରସ୍ତୁତ କଲେ ।  ନଗରପରିମଳ ଯୋଜନା ହେଲା । ଉନ୍ନୟନ ପାଇଁ ସଂସ୍ଥା ଓ ଆଇନ ପ୍ରଣୟନ ହେଲା । ବିଜ୍ଞାପିତ ଅଞ୍ଚଳ ମ୍ୟୁନିସିପାଲିଟିରେ ହେଲା । ମ୍ୟୁନିସିପାଲିଟି ରୂପାନ୍ତରୀତ ହେଲା କର୍ପୋରେସସନ୍‌କୁ । ତେବେ ଏତେସବୁ ଆଇନ ପ୍ରଣୟନ ଏବଂ ସରକାରୀ ସର୍ବୋଚ୍ଚକର୍ତ୍ତାଙ୍କ ଖୋଦ ଉପସ୍ଥିତିରେ ସହରଟା ବିକଳାଙ୍ଗ ହେଲା । ବିଡ଼ିଏ ନିଜ ଆଇନକୁ ଭାଙ୍ଗି ଯାହାକି ଯାହାକୁ ଇଚ୍ଛା ତାକୁ ଅତ୍ୟୁଚ୍ଚ ପ୍ରାସାଦ ନିର୍ମାଣର ଅନୁମତି ଦେଲେ ଅବା ନିର୍ମାଣ ସମୟରେ ଆଖିବୁଜି ନିରବ ରହିଲେ । ବୋହି ଯାଉଥିବା ନାଳସବୁ ଉପରେ ଅନେକ ବଡ଼ ବଡ଼ କୋଠାଘର ତିଆରି ହେଲା । ଘରିଆଡ଼େ ଜବରଦଖଲ । ପାଣିବାଟ ସଂକୁଚିତ ହେଲା । ନାଳସବୁ କଂକ୍ରିଟ ହେବା ଫଳରେ ମାଟିତଳକୁ ବି ପାଣି ଆସିଲା ନାହିଁ । ମାଳମାଳ କୋଠାଘର ହେବା ସମୟରେ ସରକାର ବା ସରକାରୀ କର୍ମଚାରୀ ସେଥିପ୍ରତି କେହି ଦୃଷ୍ଟି ଦେଲେନାହିଁ । ନାଳସବୁ ଜବରଦଖଲ ହେଲା । ଅସରାଏ ଦି ଅସରା ପାଣିରେ ସହରର ଅନେକ ଅଞ୍ଚଳ ଜଳାର୍ଣ୍ଣବ

ହେବାରେ ଲାଗିଲା । ନର୍ଦ୍ଦମା ପାଣି ଘରେ ପଶିବାରୁ ବଡ଼ବାବୁମାନେ ଉପର ମହଲାକୁ ଉଠିଲେ । ସିଡ଼ି ଲଗେଇ ଉଠିଗଲେ । ଲୋକେ ଏବେ ନିଜ ଘରକୁ ମେସିନ୍ ଲଗାଇ ଉଠାଇବାର ଚେଷ୍ଟା ମଧ୍ୟ କଲେଣି । କାହାଙ୍କ ପାଖରେ ସିନା ପଇସା ଅଛି ଏସବୁ କରିବେ । ନାଳ କେଡେ ପଡ଼ିରହିଥିବା ସେବାକାରୀ – ବସ୍ତିବାସିନ୍ଦାମାନଙ୍କ ଅବସ୍ଥା କହିଲେ ନସରେ । ଖରାଦିନେ ଅସହ୍ୟ ଗରମ ହେତୁ ନିର୍ଗତ ହେଉଥିବା ଗାଡ଼ି ଧୂଆଁ ସହିତ ବାବୁମାନଙ୍କ ଘରେ ଲାଗିଥିବା ଶୀତତାପ ନିୟନ୍ତ୍ରିତ ଅସଂଖ୍ୟ ମେସିନର ନିର୍ଗତ ବାଷ୍ପର ପ୍ରଭାବ ସାରା ସହରକୁ ଛାଇଦେଇଛି । କଂକ୍ରିଟ ଜଙ୍ଗଲରେ ଜଳବାୟୁ ଜନିତ ଦୁଃଖ ଭୋଗିବାକୁ ପାଲ ଘେରେଇ ପଡ଼ି ରହିଛନ୍ତି । ନୁଆଣିଆ ଟିଣ ଘଦର ତଳେ ପଡ଼ି ରହିଥିବା ଅସଂଖ୍ୟ ଲୋକ । ସେମାନଙ୍କ ଦୁଃଖ ବର୍ଷାଦିନେ ଯେତିକି ଅସହ୍ୟ ବୋଧହୁଏ ଖରାଦିନେ ତା'ଠାରୁ ଅଧିକ ।  ଶୀତତାପ ନିୟନ୍ତ୍ରିତ ଘରେ ରହୁଥିବା ବାବୁମାନେ ଏସବୁ ଯନ୍ତ୍ରଣା ବିଶେଷ ଅନୁଭବ କରନ୍ତି ନାହିଁ ।

ବଡ଼ଲୋକଙ୍କ ଅପରିଣାମଦର୍ଶିତା ସରକାରୀ ବାବୁମାନଙ୍କର ନିୟମଭଙ୍ଗ ଓ ଲାଞ୍ଚଖୋର ମନବୃତ୍ତି ଯୋଗୁ ପୁରା ସହରଟା ବେଳେବେଳେ ଜଳାର୍ଣ୍ଣବ ହେଉଛି ତ ବେଳେବେଳେ ଅସହ୍ୟ ଏବଂ ଖରାରେ ଛଟପଟ ହେଉଛି ଓ ଏହି ମନୁଷ୍ୟକୃତ ଯନ୍ତ୍ରଣା ଦିନକୁ ଦିନ ବଢ଼ିବାରେ ଲାଗିଛି ।

ଘରେ ପାଣି ପଶିଲେ ଅବା ରାସ୍ତାରେ ଚାଲୁଥିବା ପାଣିରେ ଗାଡ଼ି ବୁଡ଼ିଗଲାବେଳେ ଏମାନେ ମ୍ୟୁନିସିପାଲିଟିର କର୍ପୋରେଟର ମେୟରଙ୍କୁ ବହେ ଶୋଧନ୍ତି । ସରକାରଙ୍କୁ ଶୋଧନ୍ତି । ସେମାନେ କେନ୍ଦ୍ର ସରକାର ଉପରେ ଦୋଷ ଢାଳନ୍ତି । ଜାତୀୟ ରାଜପଥ ନିର୍ମାଣରେ ତ୍ରୁଟିଥିବା ହେତୁ ଏପରି ଘଟୁଛି ବୋଲି କହନ୍ତି । ମେୟରେ, କର୍ପୋରେଟର, ରାଜନେତା, ପ୍ରଶାସକମାନେ ଏ ସମୟରେ ଆସି ଆଶ୍ୱାସନା ଦିଅନ୍ତି । ଏବର୍ଷଟା ସହିଯାଆନ୍ତୁ, ଆସନ୍ତା ବର୍ଷ ପୂର୍ବରୁ ସବୁ ସଜାଡ଼ି ହୋଇଯିବ । ବହୁକୋଟି ଟଙ୍କାର ବ୍ୟୟବରାଦ ବିଷୟରେ ଟିଭି ଚ୍ୟାନେଲରେ ପ୍ରଚାର କରାଯାଏ । ତାପରେ ସମସ୍ତେ ଭୁଲିଯା'ନ୍ତି । ପୀଡ଼ିତ ଲୋକେ ଆଗ ଭୁଲନ୍ତି । ପାଣି ଗଲାପରେ ସବୁ ରାଜନେତାଙ୍କୁ ବେକରେ ଫୁଲମାଳଦେଇ, ବାଜା ବଜାଇ, ବାଣ ଫୁଟାଇ ନଗରକମିଟୀ ଗୃହରେ ସଭାକରନ୍ତି । ଶାସକ ଓ ଯୋଜନାକାରୀମାନେ ମଧ୍ୟ ବିମୋହିତ ହୁଅନ୍ତି । ପୁଣି ପରବର୍ଷ ସମସ୍ୟା ବଳିପଡ଼େ । ଏମିତି ପ୍ରତିବର୍ଷ ବର୍ଷାଦିନେ ଦେଖିବାକୁ ମିଳେ । ଅଧିକରୁ ଅଧିକ ହୁଏ । କିଛି ଥୁକ୍‌ପାଲିସ୍ କାମ ଯେ ନ ହୁଏ ତା' ନୁହେଁ । ତେବେ

ସମସ୍ୟାର ସମାଧାନ ହୁଏ ନାହିଁ । ଯନ୍ତ୍ରଣା ଏଠି ପ୍ରକୃତି କୃତ ନୁହେଁ, ମନୁଷ୍ୟ କୃତ । ନାଗରୀକମାନେ ଦାୟୀ, କ୍ଷମତାବାଦୀ ନେତାମାନେ ଦାୟୀ, ଆଖିବୁଜି ସୁଖ ଶୋଷୁଥିବା ପ୍ରଶାସକ ଦାୟୀ । କିଏ ବେଶୀ, କିଏ କମ୍, ତା'ର ହିସାବ ତ ନିଶ୍ଚୟ ହେବା ଦରକାର । ହେଲେ ସମସ୍ତେ ପରସ୍ପରକୁ ଦୋଷଦେଇ ସମସ୍ୟା ବଢ଼େଇ ଚାଲିଛନ୍ତି । କେବଳ ଭୁବନେଶ୍ୱର ନୁହେଁ, ପ୍ରାୟତଃ ସବୁ ଛୋଟବଡ଼ ସହରରେ ଏପରି ମନୁଷ୍ୟକୃତ ଦୁର୍ବିପାକ ଘଟୁଛି । ସହରଟି ଚୋଟ ସହର କୋଣାର୍କ ବିଜ୍ଞାପିତ ଅଞ୍ଚଳ ହେଉ ଅବା ବଡ଼ ସହର ସମ୍ବଲପୁର, ବ୍ରହ୍ମପୁର, କଟକ ହେଉ ସବୁଠାରେ ସମାନ ବ୍ୟବସ୍ଥା । ଲଗାଣ ବର୍ଷାରେ ପାଣି ପଶେ । ଖରାଦିନେ ଭୂମିତଳ ପାଣି ଖସେ । ପିଇବା ପାଣିର ଚରମ ଦୁର୍ଦ୍ଦଶା ଭୋଗିବାକୁ ହୁଏ । ସବୁ ସହରପାଇଁ ସମାନ ଦୂରବସ୍ଥା ବଢ଼ିବାରେ ଲାଗିଛି । ସବୁ ସହରରେ ବେଶୀ ଭୋଗନ୍ତି ସହରର ବସ୍ତି ବାସିନ୍ଦାମାନେ । ବଡ଼ବାବୁମାନଙ୍କର କାର ଭାସେ, ହେଲେ ବସ୍ତି ବାସିନ୍ଦାଙ୍କ ଘରଭିତରେ ପାଣି ପଶି ରୋଷେଇ ହାଣ୍ଡି, ଭାତଥାଳି ଭାସିଯାଏ । ତେବେ ତଳବର୍ଗର ଏହି ବସ୍ତିବାସିନ୍ଦାଙ୍କର କି ଦୋଷ ଅଛି ସେବା ଯୋଗାଇବା ଓ ପେଟପାଟଣା ଯନ୍ତ୍ରଣାରେ ଛଟପଟ ହେଇ ସହରକୁ ଚାଲିଛନ୍ତି, ଭାଗ୍ୟକୁ ଆଦରି ପଡ଼ିରହିଛନ୍ତି । ସେମାନଙ୍କ ନିକଟରେ ଗୋଟିଏ କଥା ଉଣାଅଛି । ତାହାହେଉଛି ସଂଘବଦ୍ଧ ଭାବେ ଆନ୍ଦୋଳନର ରାସ୍ତାକୁ ଓହ୍ଲାଇବା ।



# ମିଠା ମିଠା ସ୍ୱପ୍ନ ଓ ଅପହଞ୍ଚ ମୌଳିକ ଆବଶ୍ୟକତା

ଭାରତରେ ଗରାଞ୍ଚଳ ଉନ୍ନତି ଓ ତତ୍‌ସହିତ ବସ୍ତି ଉନ୍ନୟନ ତଥା ବସ୍ତିବାସିନ୍ଦାଙ୍କୁ ମୌଳିକ ସୁବିଧା ସୁଯୋଗ ଯୋଗାଇଦେବାର ଅନେକ ସ୍ୱପ୍ନିଳ ଯୋଜନାମାନ ପ୍ରସ୍ତୁତ ହେବାରେ ଲାଗିଛି । ସେଥିପାଇଁ ଅର୍ଥବରାଦ କେନ୍ଦ୍ର ସ୍ତରରେ ଓ ଅଂଶଭାବେ ରାଜ୍ୟମାନଙ୍କରେ ମଧ ହୋଇଛି । ଏହିସବୁ କେନ୍ଦ୍ରୀୟ ଯୋଜନା ମଧରେ ବଡ଼ ଦୃଷ୍ଟି ଆକର୍ଷଣକାରୀ ରଂଗୀନ ସ୍ୱପ୍ନ ହେଉଛି ସ୍ମାର୍ଟ ସିଟି । ପ୍ରଥମ ପର୍ଯ୍ୟାୟରେ ଦେଶର ବଛାବଛା ୧୦୦ଟି ଶହର ମଧରେ ଭୁବନେଶ୍ୱର ରହିଛି । ଜାତୀୟ, ଆନ୍ତର୍ଜାତୀୟ ସ୍ତରରେ ଭୁବନେଶ୍ୱରର ସ୍ମାର୍ଟସିଟିକୁ ନେଇ ଚର୍ଚ୍ଚା ଓ ପ୍ରତିଯୋଗିତାର କାହାଣୀମାନ ସମ୍ବାଦପତ୍ର ମାନଙ୍କରେ ପ୍ରକାଶ ପାଉଛି ।

ଓଡ଼ିଶା ଇତିହାସରେ ଭୁବନେଶ୍ୱର ସର୍ବପ୍ରାଚୀନ ନଗର ବ୍ୟବସ୍ଥା । ବୌଦ୍ଧ ଶ୍ରମଣଙ୍କ କେନ୍ଦ୍ର ହେଉ ଅବା ଅନେକ ପ୍ରାଚୀନ ରାଜ ପରିବାରର ରାଜଧାନୀଭାବେ ହେଉ ଏହାର ଐତିହାସିକ କ୍ଷାତି ଓ ପରିଚିତ ରହିଛି । ଏଥିସହିତ ପ୍ରାଚୀନ ଶୈବକ୍ଷେତ୍ର ଭାବେ ଅନେକ ମନ୍ଦିର ଯାତ୍ରୀ ପରମାର୍ଥିମାନଙ୍କୁ ବହୁସଂଖ୍ୟାରେ ଆକୃଷ୍ଟ କରିଆସିଛି । ଏହାର ପ୍ରାକୃତିକ ସୁନ୍ଦର ପରିବେଶ ଓ ବର୍ଷତମାମ ଉତ୍ତମ ନାତିଶୀତୋଷ୍ଣ ଜଳବାୟୁ, କଳକଳନାଦିନୀ ନଦୀ ଓ ଝରଣାର ଜଳ, ମୁକ୍ତ ବାୟୁପ୍ରବାହ, ସବୁଜ ପରିବେଷ୍ଟନୀ ଅତ୍ୟନ୍ତ ସୁନ୍ଦର ଓ ସୁଶିତଳ ଥିବାରୁ ସ୍ୱାଧୀନତା ପରେ ରାଜ୍ୟର ରାଜଧାନୀଭାବେ ଅନେକ ବାଦ ବିସମ୍ବାଦର ସମ୍ମୁଖୀନ ହୋଇ ମଧ ତତ୍କାଳୀନ ନେତା - ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ ଏହି ସ୍ଥାନ ନିର୍ଣ୍ଣୟ କରିଥିଲେ । ଏ ସ୍ଥାନ ନିର୍ଣ୍ଣୟରେ ଅନ୍ୟତମ ବଳିଷ୍ଠ ଯୁକ୍ତିଥିଲା ଯେ ସହରର ଲୋକସଂଖ୍ୟା ଯେତେ ବୃଦ୍ଧି ପାଇଲେ ବି ବିଶେଷଭାବେ ଲୋକସଂଖ୍ୟା ଭିଡ଼ ଜନିତ ଅସୁବିଧା ଉପୁଜିବ ନାହିଁ ଓ ରାଜଧାନୀର କଳେବର ବୃଦ୍ଧି ଘଟିବ । ସେ ସମୟର ଚାଳିଶ ହଜାର ଲୋକ ଧାରଣ କରିଥିବା ଭୁବନେଶ୍ୱର ଯେ ଏକ ସମୟରେ ଚାଳିଶ ଲକ୍ଷ ଲୋକଙ୍କୁ କୋଳରେ ଧରିବ ଏକଥା ସେସମୟର ଦୂରଦୃଷ୍ଟି ସଂପନ୍ନ ନେତା ଓ ଯୋଜନାକାରୀମାନେ ଜାଣି ପାରିଥିଲେ । ପୁରୁଣା ଭୁବନେଶ୍ୱର ଛାଡ଼ିଦେଲେ ରେଳ ଷ୍ଟେସନ ନିକଟବର୍ତ୍ତି ମାଷ୍ଟରକ୍ୟାଣ୍ଟିନ୍ ସମେତ ଗୋଟିଏ ନୂଆ ଅଞ୍ଚଳ ଅଶୋକ ନଗର, ବାପୁଜୀ ନଗର ଓ ବର୍ତ୍ତମାନର ଖାରବେଳ

ନଗର ଆତ୍ମପ୍ରକାଶ କରିଥିଲା । ବାପୁଜୀ ନଗରର ପୁରୁଣା ସ୍ଥାୟୀ ବାସିନ୍ଦାଙ୍କ ପ୍ରତିନିଧି ଏ ଲେଖକଙ୍କୁ କିଛିବର୍ଷ ତଳେ ଲିଜ୍ ବ୍ୟବସ୍ଥାକୁ ଫ୍ରି ହୋଲ୍ଡିଂ କରିବାର ଦାବୀନେଇ ଭେଟିଲାବେଳେ ଗୋଟିଏ ଐତିହାସିକ ବିବରଣୀ ରଖିଥିଲେ । ସେମାନଙ୍କୁ ବାଧ କରାଯାଇ ତତ୍କାଳୀନ ନେତା ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ୍ ଗୋଟିଏ ସମବାୟ ବ୍ୟବସ୍ଥା ମଧ୍ୟରେ ମାତ୍ର ୪ ଅଣାର ସଦସ୍ୟଭୁକ୍ତ କରାଇ ଜାଗା ବଣ୍ଟନ କରାଇଥିଲେ ଓ ସେମାନଙ୍କୁ ଘରକରି ରହିବାକୁ କହିଥିଲେ । ସେମାନେ ବଜାର ଉଦ୍ଦେଶ୍ୟରେ କଟକ ଯାଉଥିଲେ ଏବଂ ଅତିବେଶୀ ହେଲେ ନିକଟସ୍ଥ ଲିଙ୍ଗରାଜ ମନ୍ଦିର ପାଖ ପୁରୁଣା ବଜାରକୁ ବା ହାଟକୁ ଯାଉଥିଲେ । ଏହାପରେ ନବନିର୍ମିତ ରାଜ୍ୟପାଳ ଭବନ, ସଚିବାଳୟ, ବିଧାନସଭା ପ୍ରଭୃତି ଗଢ଼ିଉଠବା ସହିତ ସରକାରୀ ବାସସ୍ଥଳୀ ତଥା ବଜାର ସୃଷ୍ଟି ହେଲା । କଂଗ୍ରେସ ଅଧିବେଶନ କାଳରେ ୧୯୬୪ ମସିହାରେ ବସ୍ତୁତ ଅନେକ ନୂଆ ରାସ୍ତା, ନୂଆ ଘର, ନଗର ଓ ବଜାରମାନ ସୃଷ୍ଟି ହେଲା । ଏଠି କେବଳ ରେଳଷ୍ଟେସନ୍ ପାଖରେ କିଛି ଦୋକାନ ଓ ରାଜମହଲ ଛକ, ମାଷ୍ଟରକ୍ୟାଣ୍ଟିନ୍ ଛକ ପାଖରେ କିଛି ଦୋକାନ ଗଢ଼ି ଉଠିଲା । ଆଜିର ଭୁବନେଶ୍ୱର ଦେଖିଲେ ସେ ସମୟର ଭୂବନେଶ୍ୱରକୁ ଭାବି ହେବନାହିଁ । ଆଜିର ଭୁବନେଶ୍ୱର କେବଳ ଓଡ଼ିଶାରେ ନୁହେଁ, ପୂର୍ବାଞ୍ଚଳ ରାଜ୍ୟମାନଙ୍କ ଆବଶ୍ୟକତା ପୂରଣ ପାଇଁ ଗୋଟିଏ ବଡ଼ ଶିକ୍ଷାକେନ୍ଦ୍ର (Education hub)ରେ ପରିଣତ ହୋଇଛି । ବିଭିନ୍ନବର୍ଗର ଲକ୍ଷାଧିକ ଛାତ୍ରଛାତ୍ରୀ ଏଠାରେ ଗୁଣ୍ଡ ହେଉଛନ୍ତି । ଅତ୍ୟାଧୁନିକ କଳିଙ୍ଗ ଷ୍ଟାଡିୟମ ଦେଶ ବିଦେଶର ଅନେକ ଖେଳପାଇଁ ପ୍ରସ୍ତୁତ ହୋଇ ରହିଛି । ଏହା କେବଳ ସରକାରୀ ଦପ୍ତର ନୁହେଁ, ବେସରକାରୀ ଶିଳ୍ପସଂସ୍ଥା କର୍ପୋରେଟ ମାନଙ୍କରେ ଗୋଟାଏ ବଡ଼ କେନ୍ଦ୍ର ପାଲଟି ଯାଇଛି । ଇନ୍‌ଫୋସିସ୍, ଫର୍ଚ୍ୟୁନ୍‌ଟାୱାର ଆଦି ଓ ଏହାର ଆଖପାଖ ଅଞ୍ଚଳରେ ଏସବୁର ପ୍ରମାଣ ବିଦ୍ୟମାନ । ଏବେ କଟକ ବା ଜଟଣୀ ବଜାର କେନ୍ଦ୍ର ହୋଇନାହିଁ । ଭୁବନେଶ୍ୱରେ ପରିସର ଭିତରେ ଓ ବାହାରେ ଅନେକ ବଡ଼ ବଡ଼ ସପିଙ୍ଗ୍‌ମଲ ଦୃଶ୍ୟମାନ । ପ୍ରତିଦିନ ସହର ଭିତରକୁ ହାତଗଣତି ବସ୍ ବା ଟ୍ରକ୍ ନୁହେଁ, ହଜାର ହଜାର ସଂଖ୍ୟାରେ ଯାତ୍ରୀବାହୀ ଗାଡ଼ି ଓ ଶହଶହ ସଂଖ୍ୟାରେ ରେଳଗାଡ଼ି ଆସୁଛି । ଦେଶ ବିଦେଶକୁ ଯାଉଥିବା ବ୍ୟୋମଯାନ ସଂଖ୍ୟା ବଢ଼ିବାରେ ଲାଗିଛି ।

ଭୁବନେଶ୍ୱରର କଳେବର ବୃଦ୍ଧି ଘଟିଛି । ଶ୍ରୀବୃଦ୍ଧି ମଧ ଘଟିଛି । ବିଜ୍ଞାପିତ ଅଞ୍ଚଳରୁ ଆସି ରାଜ୍ୟର ପ୍ରଥମ ଓ ସର୍ବବୃହତ କର୍ପୋରେସନ୍‌ରେ

ପରିଣତ ହୋଇଛି । ନଭଶ୍ଚୁମ୍ବୀ ପ୍ରାସାଦମାନ ବେଳେବେଳେ ପ୍ରାଚୁର୍ଯ୍ୟଭରା ଅବସ୍ଥାର ପ୍ରମାଣ ରଖୁଛି ।

ଏଥିସହିତ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରର ସୁବିଧା ସୁଯୋଗ କଥା କୁହାଯାଇ ଅନେକ ସ୍ୱପ୍ନବଣ୍ଟନ ମଧ୍ୟ ହେଉଛି । ରେଳଷ୍ଟେସନ ଆନ୍ତର୍ଜାତୀୟ ସ୍ତରର ହେବ ସେଥିପାଇଁ ଯୋଜନା ପରେ ଯୋଜନାମାନ ଘୋଷଣା ହେଉଛି । ସ୍ମାର୍ଟସିଟିର ବହୁରୂପୀ ସ୍ୱପ୍ନ ପ୍ରତ୍ୟେହ ବଣ୍ଟାଯାଉଛି । ଏସବୁ କ'ଣ ବୋଲି ଜାଣି ନଥିବା ଲୋକେ ନିଶ୍ଚୟ ଶୁଣି ଖୁସି ହେଉଛନ୍ତି ।

ଦୁଃଖ ଓ ପରିତାପର ବିଷୟ ହେଉଛି ଏଠି ରହୁଥିବା ଅଗଣିତ ବାସିନ୍ଦା ଅନେକ ମୌଳିକ ସୁବିଧା ଯେ ପାଉ ନଥାନ୍ତି ଏକଥା ସ୍ୱୀକାର କରିବାକୁ ହେବ । ବାହାରୁ ଆସୁଥିବା ଅଗଣିତ ପର୍ଯ୍ୟଟକ ଖେଳାଳୀ ମଧ୍ୟ ନଗରର ଐତିହ ସ୍ଥିତି ସଂପର୍କରେ ଅବଗତ ନଥିବାରୁ ବର୍ତ୍ତମାନ ସ୍ଥିତିକୁ ନେଇ ତଉଲିବା ସମ୍ଭବପର ନୁହେଁ । ମାତ୍ର ଅଳ୍ପଦିନର ରହଣି ମଧ୍ୟରେ ସେମାନେ ଏରୋଡ୍ରମରୁ ଗନ୍ତବ୍ୟସ୍ଥଳୀ ପର୍ଯ୍ୟନ୍ତ ଯାଉଯାଉ ଯଦି କୌଣସି କାରଣରୁ ବାଟହୁଡ଼ି ଅନ୍ୟଏକ ରାସ୍ତାରେ ପଶିଯିବେ ତେବେ ଏଠି ଯେ ଅନେକ ଅସୁବିଧାରେ ନାଗରୀକ କାଳାତିପାତ କରୁଛନ୍ତି ଅବା ଭଲ ରାସ୍ତାଟିଏ ନାହିଁ, ସେକଥା ଦେଖିନେବେ ରାସ୍ତା କଡ଼ରେ । ଆବର୍ଜନା ଅଳିଆ ଗଦା ହୋଇଥିବା ଦେଖିବେ । ନର୍ଦ୍ଦମା ଭିତର ଖାଲଡିପ ଦେଇ ତାଙ୍କୁ ଯାତ୍ରା କରିବାକୁ ହେବ । ଏକଥା ସେମାନେ ହଠାତ୍ ଦେଖି ନିଶ୍ଚୟ ତାରତମ୍ୟ ବାରିନେବେ । ଆସିବା ବେଳର ଧାରଣା ବଦଳିଯିବ । ଭୁବନେଶ୍ୱରସ୍ଥିତ ପୁତ ଗନ୍ଧମୟ, ଅଳିଆ ଆବର୍ଜନା ପୂର୍ଣ୍ଣ ବସ୍ଷ୍ଟାଣ୍ଡ୍ ଆଡ଼େ ସେମାନେ କେହି ବାଉଳାରେ ନଗଲେ ଭଲ । କାରଣ ଏଠି ଯେ ଗୋଟିଏ ବିକାଶ, ଭଦ୍ର ସହର ଗଠନର ସାମାନ୍ୟତମ ନିଷ୍ଠା ବା ଉଦ୍ୟମ ନାହିଁ ଦେଖିନେବେ । ସ୍ୱପ୍ନ ବାଣ୍ଟିବାରେ କାହାର କିଛି ଆପତ୍ତି ନାହିଁ, ମାତ୍ର ବାସ୍ତବସ୍ଥିତି ଓ ମୌଳିକ ଆବଶ୍ୟକତା ପ୍ରତି ଅଣଦେଖା ନିଶ୍ଚୟ ଅକ୍ଷମଣୀୟ ଅପରାଧ ।

ଭୁବନେଶ୍ୱରର ଅନେକ ରାସ୍ତାର ଶୌନ୍ଦର୍ଯ୍ୟକରଣ ଯଥା ଦୁଇପାର୍ଶ୍ୱରେ ଚଲାପଥ, ସାଇକେଲ୍ ପଥ, ଛାୟା ପ୍ରଦାନକାରୀ ବୃକ୍ଷ, ବିଭିନ୍ନ ଋତୁ ଅନୁଯାୟୀ ଫୁଲଗଛ ରହିବା ଦୂରେଥାଉ, ମୁଖ୍ୟରାସ୍ତା ଅନେକ ସମୟଧରି ଅବରୋଧ ହୋଇ ରହୁଛି । ଅଳିଆ ଆବର୍ଜନା ଜମାହୋଇ ରହିଛି । ପଚ୍ଛ ପରିବା ଫଳ ପଡ଼ି ରହୁଥିବା ଦେଖାଯାଉଛି । ମୁଖ୍ୟ ରାସ୍ତାରେ ମାଳମାଳ ଗାଈଗୋରୁ, ଷଣ୍ଢ, କୁକୁର ବୁଲାବୁଲି

କରିଥାନ୍ତି । ମାଇଲ ମାଇଲ ଧରି ରାସ୍ତାର ଦୁଇ ପାର୍ଶ୍ୱରେ ଗାଡ଼ି ଥୁଆହୋଇ ରହୁଛି । ଅନେକ ଜାଗାରେ ପାର୍କିଂ ମାନ କରାଯାଇ ଗାଡ଼ିର ପାର୍କିଂ ଫି ମଧ୍ୟ ଆଦାୟ କରାଯାଉଛି । ରାସ୍ତା ପାର୍ଶ୍ୱରେ ସ୍କୁଲ୍, କୋଚିଂ ସେଣ୍ଟର ଖୋଲାଯାଇ ରାସ୍ତା ଅବରୋଧ ହେଉଛି । ଅନେକ ରାସ୍ତାକଡ଼ରେ ବେଆଇନ୍ ଭାବେ ଛୋଟ ଛୋଟ ମନ୍ଦିରମାନ କର୍ତ୍ତୃପକ୍ଷଙ୍କ ଜ୍ଞାତସାରରେ ପ୍ରତିଦିନ ଗଢ଼ି ଉଠୁଛି ଓ ଏହିସବୁ ମନ୍ଦିରରେ ଶସ୍ତା ଭୋଜନାଳୟ ଖୋଲାଯାଇ ଅନେକ ସମୟରେ ଅଳିଆ ଆବର୍ଜନା ରାସ୍ତାରେ ପଡୁଛି । ଭିତର ରାସ୍ତାଗୁଡ଼ିକର କଥା କହିଲେ ନସରେ । ଜବରଦଖଲ ହେତୁ ଦିନକୁ ଦିନ ଅଣଓସାରିଆ ହେବାରେ ଲାଗିଛି । ଯେଉଁଠି ଇଚ୍ଛା ସେଠି ମନଇଚ୍ଛା ବ୍ୟବସାୟ ଅନୁଷ୍ଠାନ ଗଢ଼ାହୋଇ ରାସ୍ତା ଉପରେ ଭିଡ଼ ଜମୁଛି ।

ଏହା ଯେ କେବଳ ଭୁବନେଶ୍ୱରର ଅବସ୍ଥା ତା' ନୁହେଁ । ପୁରୀର ଅବସ୍ଥା ଏହାଠାରୁ ଅଧିକ । ପ୍ରଭୁଙ୍କ ରଥଚକ ଅସରାଏ ପାଣିରେ ବୁଡ଼େ । ବାହାରୁ ଆସୁଥିବା ଅସଂଖ୍ୟ ପର୍ଯ୍ୟଟକ ପ୍ରତିବର୍ଷ ବର୍ଷାଦିନେ ଦୁର୍ଦ୍ଦଶା ଭୋଗନ୍ତି । କେବଳ ସମୁଦ୍ରକୂଳ ଝାଉଁବଣର ବାଲିବୁଦା ଉପରେ ଆଶ୍ରିତମାନେ ଏଥିରୁ ରକ୍ଷା ପାଇଥାନ୍ତି । ତେବେ ସମୁଦ୍ରପାଣି, ଝଡ଼ବତାସ ମାଡ଼ିଆସିଲେ ସେମାନଙ୍କ ଅବସ୍ଥା ଆହୁରି ଖରାପ ହୁଏ । କଟିକିଆଙ୍କ ଅବସ୍ଥା କହିଲେ ନସରେ । ଧବଳ ଟଗର - କଟକ ନଗରରେ ଯୋଡ଼ି ହୋଇଯାଏ । ଲାଗିଯାଇଥାଏ ନର୍ଦ୍ଦମା ପାଣିରେ ଆସ୍ତରେ । ସମ୍ବଲପୁର, ବ୍ରହ୍ମପୁରର ଅନୁଭବୀ ବାସିନ୍ଦା ଓ ବସ୍ତୀ ବାସିନ୍ଦାଙ୍କ ବ୍ୟବସ୍ଥା ମଧ୍ୟ ଅନେକ ସମୟରେ ଅସହ୍ୟ ମନେହୁଏ ।

ବସ୍ତିମାନଙ୍କ ସଂଖ୍ୟା ଓ ବସ୍ତିବାସିନ୍ଦାଙ୍କ ସଂଖ୍ୟା ବୃଦ୍ଧି ପାଇବା ସ୍ୱାଭାବିକ । ସହରର ଆବଶ୍ୟକତା ଅନୁସାରେ ସେବା ଯୋଗାଇବା ଦୃଷ୍ଟିରୁ ହେଉ ଅବା କର୍ମସଂସ୍ଥାନ ଉଦ୍ଦେଶ୍ୟରେ ଏ ବସ୍ତିମାନଙ୍କରେ ଗହଳି ଜମୁଛି । ଏହାକୁ ନିୟନ୍ତ୍ରିତ କରିବା ଅବା ସେମାନଙ୍କୁ ସୁସ୍ଥ ସ୍ୱଚ୍ଛ ଜୀବନଯାପନପାଇଁ ଉଚ୍ଚମାନର ଗୃହ ଯୋଗାଣ ତଥା ମୌଳିକ ସୁବିଧାସୁଯୋଗ ଯୋଗାଇ ଦେବାର ଦେଖାଯାଏ ନାହିଁ । ରାସ୍ତାରେ ବିଭିନ୍ନ ବର୍ଗର ଭିକାରୀ, ପାଗଳ-ପାଗେଳୀ ଘୁରି ବୁଲୁଛନ୍ତି । ସେମାନଙ୍କର ଥଇଥାନ୍‌ର ବ୍ୟବସ୍ଥା ନାହିଁ । ସହର ତମାମ ଅଳିଆ ଡ୍ରେନ୍ କଡ଼ରେ ପଡ଼ିରହିଛି । ଡ୍ରେନ୍‌ଗୁଡ଼ିକ ସଫା ନହେବା ଫଳରେ ମଶା, ମାଛିଙ୍କ ଦାଉ ଦିନକୁ ଦିନ ଅଧିକ ଅସହ୍ୟ ହୋଇ ଉଠୁଛି । ସବୁଠାରୁ ବଡ଼ କଥା ହେଉଛି ପୂର୍ବେ ଜଳ ନିଷ୍କାସନରେ ଖ୍ୟାତି ଥିବା ସହରଟିର ଅବସ୍ଥା

ବର୍ଷାଦିନେ ଗାଁର ନଦୀବଢ଼ି ମନେ ପକେଇ ଦେଇଥାଏ । କେବଳ ବସ୍ତି ଭିତରେ ନୁହେଁ ବାବୁଭାୟା ମାନଙ୍କ ବଡ଼ ବଡ଼ କୋଠାଘରେ ପାଣି ପଶିଯାଏ । ରାସ୍ତା ଉପରେ ଆଣ୍ଠୁଏ ଉଚ୍ଚରେ ପାଣି ଜମିରହି ଯାତାୟତରେ ବାଧା ସୃଷ୍ଟିହୁଏ । ଏଠି ତିନିଗୋଟି ସଂସ୍ଥା ମ୍ୟୁନିସିପାଲ୍ କର୍ପୋରେସନ୍ ବୃହତ୍ତର ଭୁବନେଶ୍ୱର ଉନ୍ନୟନ ସଂସ୍ଥା (B.D.A) ଓ ଖୋଦ ସରକାରୀ ବିଭାଗ (ଜି.ଏ.ପୂର୍ତ୍ତବିଭାଗ, ଜଳସେଚନ ବିଭାଗ) ମାନ ଅଛନ୍ତି । ସମସ୍ତଙ୍କ ଜାଣତରେ ଅବ୍ୟବସ୍ଥା, ବେଆଇନ୍ ଜବରଦଖଲ ବୃଦ୍ଧି ପାଉଥିବା ମନେହୁଏ ।

ସ୍ମାର୍ଟ ସିଟି ଜାତୀୟ, ଆନ୍ତର୍ଜାତୀୟ ସ୍ତରର ବ୍ୟବସ୍ଥା ସଂପର୍କରେ ମୁଠା ମୁଠା ସ୍ୱପ୍ନ ବଣ୍ଟା ଯାଉଥିବାବେଳେ ନଗରଭିତରେ ଥିବା ବାସିନ୍ଦାଙ୍କର ମୌଳିକ ସୁବିଧାପ୍ରତି ଧ୍ୟାନ ଦେବା ସହିତ ବାସ୍ତବ ଓ ଉନ୍ନତମାନର ପରିବେଶ ସୃଷ୍ଟି ହେବା ଦରକାର ।



# ବୃତ୍ତିଭିତ୍ତିକ ଓ ସମ୍ମାନଜନକ ସ୍ଥିତିକୁ ପ୍ରାଥମିକତା

ବସ୍ତିବାସିନ୍ଦାଙ୍କ ବୃତ୍ତି ସଂପର୍କରେ ଜାଣିଲେ ଏ କଥା ଜାଣିହେବ ଯେ ଅନେକ ବୃତ୍ତିଧାରୀ ସେମାନଙ୍କ ଦୈନନ୍ଦିନ ବୃତ୍ତିକୁ ଚାହିଁ ଗୋଟିଏ ବାସସ୍ଥାନ ଚାହାନ୍ତି । ଦହିବରା ବିକାଳୀ ବା ଠେଲାଗାଡ଼ିର ବିକାଳୀ ତା'ର ବିକ୍ରୀ ସାମଗ୍ରୀ ପ୍ରସ୍ତୁତ ଓ ଗାଡ଼ିଟିକୁ ରଖିବା ପାଇଁ ଜାଗାଟିଏ ଚାହେଁ । ପ୍ରତ୍ୟେକ ବ୍ୟକ୍ତିର ପରିବାର ସଂଜ୍ଞା ସରକାର ବିଭିନ୍ନ ବିଧି ବ୍ୟବସ୍ଥାରେ ନିର୍ଦ୍ଧାରଣ କରିଛନ୍ତି । ପ୍ରବର୍ତ୍ତିତ ଆଇନରେ ପରିବାରର ଯେଉଁ ସଂଜ୍ଞା ରଖାଯାଇଛି ତାହା ଏକ ଯୌଥ ପରିବାର । ସ୍ୱାମୀ, ସ୍ତ୍ରୀ, ଅବିବାହିତ ପୁଅ, ଝିଅ, ନିର୍ଭରଶୀଳ ରକ୍ତ ସଂପର୍କୀୟ ଅର୍ଥାତ୍ ପିତା ଓ ମାତା । ସେ ଓ ତା'ର ପରିବାର ରହିବା ନିମନ୍ତେ ଅନ୍ତତଃ ୮୦୦ ରୁ ୬୦୦ ବର୍ଗଫୁଟ୍ ପରିମିତ ସ୍ଥାନ ଆବଶ୍ୟକ । ଦୁଇଗୋଟି ରହିବା ଘର ୧୦ଫୁଟ୍ x ୧୦ ଅର୍ଥାତ୍ ୧୦୦ ବର୍ଗଫୁଟ୍ କାର୍ପେଟ ଏରିଆ ଥିବା ଗୋଟିଏ ବଖରା ଥିବା ଦୁଇ ବଖରା ଘରପାଇଁ ୨୦୦ ବର୍ଗଫୁଟ୍ ସ୍ଥାନ, ଦୁଇଗୋଟି ପାଇଖାନା ପାଇଁ ୫୦ ବର୍ଗଫୁଟ୍ ଓ ଗୋଟିଏ ରୋଷେଇଘର ପାଇଁ ୩୦ବର୍ଗଫୁଟ୍, ଘରର ଆଗପଛରେ ଥିବା ଗୋଟିଏ ବାରଣ୍ଡା ୧୦୦ ବର୍ଗଫୁଟ୍ (ସିଡ଼ି ଜାଗା ସହିତ) । ମୋଟାମୋଟି ଭାବେ ୫୦୦ ବର୍ଗଫୁଟ୍ ପରିମିତ ଅଞ୍ଚଳ ବାସସ୍ଥାନ ଓ ୧୦୦ ରୁ ୧୩୦ ବର୍ଗଫୁଟ୍ ଅଞ୍ଚଳର କାର୍ଯ୍ୟ ପରିସର ଦରକାର । ଯେଉଁଥିପାଇଁ ଏ ସମସ୍ତ ବୃତ୍ତି ସଂପୃକ୍ତ ବସ୍ତିବାସିନ୍ଦାଙ୍କ ଯୌଥ ପରିବାରର ତଳ ଜାଗାଟି ଖୋଲା ରହିବାର ଆବଶ୍ୟକତା ଅଛି । ଫଳତଃ ସେ ତା'ର ତଳମହଲାର ଗୋଟିଏ ଅଞ୍ଚଳ ବ୍ୟବହାର ପାଇଁ ସୁଯୋଗ ପାଇବ ଏବଂ ଉପରେ ତିନିମହଲାରେ ରହିବ । ଅର୍ଥାତ୍ ଛ'ଗୋଟି ପରିବାର ପାଇଁ ତିନି ମହଲା ବିଶିଷ୍ଟ ବାସଗୃହ ଗୋଟିଏ ଖୋଲା ଜାଗା (ତଳମହଲା)ବସ୍ତି ବାସିନ୍ଦାଙ୍କ ପାଇଁ ବ୍ୟବହାର ସ୍ଥଳିଭାବେ ରଖାଯିବା ଦରକାର । ଏହି ବାସଗୃହଗୁଡ଼ିକ ଜି+୩ ନିର୍ମିତ (ତଳ ଏବଂ ୩ଗୋଟି ବାସସ୍ଥାନ) କୋଠାରେ ହିଁ ରହିବ । ତୃତୀୟ ମହଲା ଉପରେ ଅବା ଦ୍ୱିତୀୟ ମହଲାରେ ରହୁଥିବା ବୟସ୍କ ବା ଅକର୍ମଣ୍ୟମାନଙ୍କ ପାଇଁ ତଳମହଲାରେ ଆବଶ୍ୟକ ସ୍ଥଳେ ଗୃହକର୍ତ୍ତା ଘରଟିଏ ପ୍ରସ୍ତୁତ କରିପାରନ୍ତି । କାରଣ ଏମାନେ ତୃତୀୟ ମହଲାକୁ ଯା' ଆସ କରିବା ସହଜ ନୁହେଁ । ଏମାନଙ୍କ ପାଇଁ ତଳେ ଗୋଟିଏ ଗୋଷ୍ଠୀ ପାଇଖାନା ଓ ଗାଧୁଆ ଘର ରହିବ । ଏପରି କରାଗଲେ ପ୍ରତ୍ୟେକ ପରିବାର ୫୦୦ ବର୍ଗଫୁଟ୍ ଜାଗାର ଏକ ଆଶ୍ରୟସ୍ଥଳୀ ପାଇବା ସହିତ ସରକାର

ପ୍ରତ୍ୟେକ ପରିବାରକୁ ଅତିବେଶିରେ ୧୬୦ ବର୍ଗଫୁଟ୍ ମୋଟ ଜାଗା ଦେବାକୁ ହେବ । ଘର ଚାରିପାଖରେ ଥିବା ଖୋଲାଜାଗା ହିସାବ କଲେ ଗୋଟିଏ ପରିବାର ପିଛା ୨୦୦ ବର୍ଗଫୁଟ୍ ଜାଗା ଦରକାର ।

ସେହିପରି ଭିନ୍ନ ବୃତ୍ତିଧାରୀ ବସ୍ତିବାସିନ୍ଦାଙ୍କ ପାଇଁ ସେହି ୫୦୦ ବର୍ଗଫୁଟ୍ ଜାଗାରେ ତିନି ମହଲା ବିଶିଷ୍ଟ ଘର ନିର୍ମାଣ ହେବା ଦରକାର ଓ ବୁଲା ବିକାଳି ତଥା ଅଳ୍ପ ସମୟପାଇଁ ରହୁଥିବା ବ୍ୟକ୍ତିମାନଙ୍କ ପାଇଁ ଦୁଇ ମହଲା ବିଶିଷ୍ଟ ଗୋଷ୍ଠୀ ଆଶ୍ରୟସ୍ଥଳୀ ଓ ଗୋଷ୍ଠୀ ଶୌଚାଳୟ ଓ ସ୍ନାନାଗାରର ଆବଶ୍ୟକତା ଅଛି । ଏପରି ବ୍ୟକ୍ତି ଦୈନିକ ବା ସାପ୍ତାହିକ ଦାବିଦାର ସୂତ୍ରରେ ରହିବେ । ପାଞ୍ଚଶହ ବର୍ଗଫୁଟ୍ ପରିମିତ ଜାଗାରେ ଦୁଇ ମହଲାରେ ୫୦ଜଣ ବ୍ୟକ୍ତି ଖୁବ୍ ଅଳ୍ପ ଭଡ଼ାଦେଇ ଭଲଭାବେ ରହିପାରିବେ । ପ୍ରତ୍ୟେକଙ୍କ ପାଇଁ ଗୋଟିଏ ଗୋଟିଏ କ୍ଷୁଦ୍ର ବଖରା ରହିପାରିବ ।

ଏହି ଆବଶ୍ୟକତା ଭିତ୍ତିରେ ସରକାରୀ ଅଧିନିୟମ ପ୍ରସ୍ତୁତ ହେବା ଦରକାର ।

ମାତ୍ର ରାଜ୍ୟ ସରକାରଙ୍କ ଦ୍ୱାରା ଯେଉଁ ଆଇନ ଓ ଅଧିନିୟମ ପ୍ରସ୍ତୁତ କରାଯାଇଛି ସେଥିରେ ବସ୍ତିବାସିନ୍ଦାଙ୍କ ପାଇଁ ଭୂ ଅଧିକାର ବ୍ୟବସ୍ଥା ଭିନ୍ନ ଭାବରେ ଦେଖାଯାଇଛି । ଆଇନର ଧାରା ୩ (Chapter-II - Land Rights) ଅନୁସାରେ ଗୋଟିଏ ମ୍ୟୁନିସିପାଲିଟିରେ ଗୋଟିଏ ପରିବାରକୁ ୪୫ ବର୍ଗମିଟର ବା ପାଖାପାଖି ୫୦୦ ବର୍ଗଫୁଟ୍ ଦେବାର ବ୍ୟବସ୍ଥା ରହିଛି । ଗୋଟିଏ ନୋଟିଫାଏଡ୍ ଏରିଆ କାଉନ୍‌ସିଲ୍‌ରେ ବାସଗୃହ ପାଇଁ ୬୦ ବର୍ଗମିଟର ରଖାଯାଇଛି । ସେହିପରି ନବଗଠିତ କର୍ପୋରେସନ୍ ସଂପର୍କରେ କିଛି କୁହାଯାଇ ନାହିଁ । ଏକଥା ସମସ୍ତେ ଜାଣନ୍ତି ଯେ ଆଜି ଯାହା ବିଜ୍ଞାପିତ ପରିଷଦ (Notified, Aria Council) ଅଛି, ଅଳ୍ପ କେଇବର୍ଷ ପରେ ତାହା ମ୍ୟୁନିସିପାଲିଟିରେ ଓ ମ୍ୟୁନିସିପାଲଟି କର୍ପୋରେସନ୍‌ର ପରିଚୟ ନେବ । ବିଧି ବ୍ୟବସ୍ଥାରେ ସହରାଞ୍ଚଳ ସଂଜ୍ଞା ନିରୁପଣ (Urban Area) କେବଳ ୧୯୫୦ର ଓଡ଼ିଶା ମ୍ୟୁନିସିପାଲିଟି ଆକ୍ଟ ମୁତାବକ କେବଳ ମ୍ୟୁନିସିପାଲିଟି ଏବଂ ଏନ୍.ଏ.ସି. ସଂପର୍କରେ ସ୍ପଷ୍ଟ । ସହରାଞ୍ଚଳରେ ଲୋକ ସଂଖ୍ୟା ହୁ ହୁ ବଢ଼ି ଚାଲିଥିବାରୁ ଏପରି ସ୍ଥିତିର ପରିବର୍ତ୍ତନ କ୍ଷୀପ୍ରତର ହୋଇଥାଏ ।

ଗୋଟିଏ କଥା ବୁଝାପଡୁନାହିଁ ଯେ ବିଭିନ୍ନ ନଗରାଞ୍ଚଳପାଇଁ ଭିନ୍ନ ଭିନ୍ନ ପରିମିତ (Area)ର ବାସଗୃହ ଜମି କାହିଁକି ରଖାଗଲା । ସେଠାର ଜମିର ସୁବିଧା ଦୃଷ୍ଟିରୁ ହୋଇଥିଲେ ଦେଖିବାକୁ ହେବ ଯେ ସବୁ ସହର ବା ନଗରାଞ୍ଚଳରେ ଜମିର ମୂଲ୍ୟ ବଢ଼ି ବଢ଼ି ଯାଉଛି ।

ଉପରୋକ୍ତ ପ୍ରସ୍ତାବ ଅନୁସାରେ ଆଇନ ପ୍ରସ୍ତୁତ ହେଲେ ୩ଗୋଟି ବସ୍ତି ବାସିନ୍ଦା ପରିବାର ୬୦୦ ବର୍ଗଫୁଟ୍ (୫୦୦ ବର୍ଗଫୁଟ୍‌ର ଘର + ୧୦୦ ଘରପାଖ ପଛରେ ଥିବା ବର୍ଗଫୁଟ୍‌ର ଖୋପଜାଗା) ପାଇବାବେଳେ ସରକାରଙ୍କୁ ମାତ୍ର ୧୭୦ ବର୍ଗଫୁଟ୍ ଜାଗା ଦେବାକୁ ହେବ । ଅନେକ ମୂଲ୍ୟବାନ ଜମି ସରକାରଙ୍କ ପାଖରେ ରହିବ ।

କରାଯାଇଥିବା ଅଧିନିୟମରେ ପ୍ରାପ୍ତ ଜମି କେହି ହିତାଧିକାରୀ ହସ୍ତାନ୍ତର ବା ବିକ୍ରୀ କରିପାରିବେ ନାହିଁ । ଏହି ଆଇନରେ ଅଛି ରହୁଥିବା ଘରକୁ ଗୃହକର୍ତ୍ତା ଯଦି ଅନ୍ୟ ଉଦ୍ଦେଶ୍ୟରେ ବ୍ୟବହାର କରିଥାଏ (For any purpose other than residential purpose) ତାକୁ ଦିଆଯାଇଥିବା ଘର ପ୍ରମାଣପତ୍ର ରଦ୍ଦ କରାଯିବ । ଏହା ନିଶ୍ଚିତ ଭାବେ ଏକ ଉତ୍ତମ ବିଧି । କାରଣ ସେହି ବସ୍ତିବାସିନ୍ଦା ନିଜର ବୃତ୍ତି ହେତୁ ବସ୍ତିରେ ଅଛନ୍ତି ଏବଂ ସେମାନଙ୍କ ପିଲାମାନେ ଅନ୍ୟବୃତ୍ତିକୁ ଗଲେ ଅଥବା ଅନ୍ୟତ୍ର ବଦଳି ହୋଇଗଲେ ପାଇଥିବା ଘରଟି ଆବଶ୍ୟକ ମୁତାବକ ଅନ୍ୟ ପରିବାର ପାଇବା ଦରକାର । ଅର୍ଥାତ୍ ସହର ବା ନଗର ବାସିନ୍ଦା ଚାହୁଁଥିବା ସମସ୍ତ ପ୍ରକାର ସେବା ମିଳିବାର ସ୍ଥାୟିତ୍ୱ ରହିବ ଓ ବସ୍ତିବାସିନ୍ଦାମାନେ ଚିରକାଳ ଏକ ଉତ୍ତମ ବାସସ୍ଥାନ ପାଇବେ ।

ବସ୍ତି ବାସିନ୍ଦାମାନେ ସମସ୍ତେ ସ୍ୱଳ୍ପ ଆୟକାରୀ । ନିଜ ଖର୍ଚ୍ଚରେ ବା ବ୍ୟାଙ୍କ ଋଣରେ ବାସଗୃହ ନିର୍ମାଣ କରିବାକୁ ଆଦୌ ସକ୍ଷମ ନୁହଁନ୍ତି । ସେହି ଦୃଷ୍ଟିରୁ ସେମାନଙ୍କୁ ନିର୍ମିତ ବାସଗୃହ ଯୋଗାଇ ଦେବାର ଆବଶ୍ୟକତା ଅଛି । ଏଥିପାଇଁ ଅଧିନିୟମରେ ଗୋଟିଏ ବସ୍ତି ଗୃହ ନିର୍ମାଣ କର୍ପୋରେସନ୍ ଗଠନ କରି ଅନ୍ୟଗୃହ ନିର୍ମାଣକାରୀ ସଂସ୍ଥାପରି ଯଥା ହାଉସିଂବୋର୍ଡ଼, ଅର୍ବାନ ହାଉସିଂ କର୍ପୋରେଟିଭ୍ ଆଦିପରି ପ୍ରସ୍ତୁତ କରିବା ଦରକାର । କେନ୍ଦ୍ର ଓ ରାଜ୍ୟ ସରକାର ବିଭିନ୍ନ ଭାବରେ କାର୍ଯ୍ୟକାରୀ କରୁଥିବା ପ୍ରବର୍ତ୍ତିତ ଯୋଜନା ଅର୍ଥ ଏହି ହାଉସିଂ କର୍ପୋରେସନ୍ ମାଧ୍ୟମରେ କେବଳ ନିର୍ମାଣ ନୁହେଁ, ରକ୍ଷଣାବେକ୍ଷଣ କରିବାର ବ୍ୟବସ୍ଥା ରହିବା ଆବଶ୍ୟକତା ଅଛି । ଯଦିଓ ଆଇନ୍ (Act.) ଅନୁସାରେ ଆର୍ଥିକ ଦୁର୍ବଳବର୍ଗ ପାଇଁ ନିର୍ଦ୍ଧାରିତ ଜମି ତା'ର ନାମରେ ବିନା ଜରସମନରେ ଦରଜ ହେବ ଏବଂ ସ୍ୱଳ୍ପ ଆୟକାରୀ ନ ହୋଇଥିଲେ ସରକାରଙ୍କ ନିଷ୍ପତ୍ତି ଅନୁସାରେ ଜରସମନ ଧାର୍ଯ୍ୟ ହେବାର କଥା ରହିଛି । ଏହି ନିମ୍ନ ଆୟକାରୀର ସ୍ଥିତି ଆୟଭିତ୍ତିକ ହେଲେ ମଧ୍ୟ ବାର୍ଷିକ ଆୟ ସଂଗ୍ରହ ସ୍ଥିରନୁହେଁ । ଆୟ ବୃତ୍ତି ଭିତ୍ତିକ ହୋଇଥିବା ହେତୁ ବୃତ୍ତି ଭଲ ହେଲେ ଆୟର ବୃଦ୍ଧି ଘଟିଥାଏ ଏବଂ ଅନେକ ସମୟରେ

ବୃତ୍ତିରେ ଭଟା ମଧ୍ୟ ପଡ଼ିଥାଏ । ଅର୍ଥାତ୍ ଗୋଟିଏ ସମୟର ଆର୍ଥିକ ଦୁର୍ବଳ ଶ୍ରେଣୀ ଅନ୍ୟ ସମୟରେ ସାମାନ୍ୟ ଉନ୍ନତି କରିପାରେ, ଗୋଟିଏ ଆର୍ଥିକ ଦୁର୍ବଳ ସ୍ଥିତି (EWS) ତଳକୁ ଖସି ଆସିପାରେ ।

ଗୃହକର୍ତ୍ତାଙ୍କୁ ଦିଆଯାଇଥିବା ବାସଗୃହ ଅଧିକାର ପତ୍ରରେ ତା'ର ସଂପୂର୍ଣ୍ଣ ପରିବାର (ସେ ଜାଗାରେ ରହୁଥିବା) ଲୋକଙ୍କର ନାମ, ବୟସ ଓ ସଂପର୍କ ସହ ପ୍ରସ୍ତୁତ ହେବା ଦରକାର । ବସ୍ତୁତଃ 'ଉତ୍ତରାଧିକାରୀ' ନିର୍ଣ୍ଣୟ ହେବା ସହିତ ଯଦି ପରିବାରର କାହା ନାମରେ ଅନ୍ୟତ୍ର ଘର ବା ଜାଗା ସେହି ସହରରେ ଥାଏ ତେବେ ତାହା ଜଣାପଡ଼ିବା ସହିତ ବାଜ୍ୟାପ୍ତି ହେବ ।

ସମ୍ବିଧାନର ଧାରା ୨୧ ମୁତାବକ ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦାଯୁକ୍ତ ଜୀବନଯାପନ (Right to live with dignity) କରିବାର ଅଧିକାର ପ୍ରାପ୍ତ ହୋଇଛି । ସେହି ଦୃଷ୍ଟିରୁ ପ୍ରତ୍ୟେକ ବସ୍ତି ଓ ବସ୍ତି ବାସଗୃହଗୁଡ଼ିକ ପ୍ରସ୍ତୁତ ହେବା ଦରକାର । ଏଥିସହିତ ପ୍ରତ୍ୟେକ ବସ୍ତିବାସିନ୍ଦାର ଆବଶ୍ୟକତା ଓ ଆର୍ଥିକ କ୍ଷମତା ଉପରେ ଦୃଷ୍ଟି ରଖାଯାଇ ଯୋଜନା ପ୍ରସ୍ତୁତ କରିବା ଆବଶ୍ୟକ । 'ବୃତ୍ତିଧାରୀ' ଓ 'ବୃତ୍ତି ଆଶାୟୀ'ଙ୍କର ସଂଖ୍ୟା ବସ୍ତିମାନଙ୍କରେ ବଢ଼ିଥାଏ । ନୂଆ ବୃତ୍ତିଧାରୀ ଓ ବୃତ୍ତି ଆଶାୟୀଙ୍କ ନିମନ୍ତେ ନୂଆକରି ଗଢ଼ି ଉଠୁଥିବା ସହରାଞ୍ଚଳରେ ସ୍ଥାନ ନିରୁପଣ ହେବା ଦରକାର । ମାତ୍ର ପୂର୍ବରୁ ଦୀର୍ଘ ଦିନଧରି 'ବୃତ୍ତି' କରି ଆସୁଥିବା ସମସ୍ତ ବସ୍ତି ବାସିନ୍ଦାଙ୍କୁ ସେମାନେ ରହୁଥିବା ସ୍ଥାନରେ ହିଁ ବାସଗୃହ ଯୋଗାଇ ଦେବା ଦରକାର । ବସ୍ତିର ସଂଜ୍ଞା ନିରୁପଣ କରାଯାଇଛି । ତାକୁ ହିଁ ଭିତ୍ତିକରି ୨୦ଟି ପରିବାରରୁ ଅଧିକ ରହିଥିବା ଜାଗାରେ ଥିବା ବସ୍ତିଗୁଡ଼ିକୁ 'ବାସଉପଯୋଗୀ' କରି କଲୋନୀରେ ପରିଣତ କରି ତା' ପାଖାପାଖି ଯୋଡ଼ି ହୋଇଥିବା ନିର୍ଦ୍ଦିଷ୍ଟ ଅଞ୍ଚଳରେ ବିକ୍ଷିପ୍ତ ହୋଇ ରହିଥିବା ପରିବାରକୁ ଏହି ନୂତନ ବସ୍ତି କଲୋନୀରେ ରଖିବାର ସୁଯୋଗ ଦେବାର ବ୍ୟବସ୍ଥା ହେବା ଦରକାର ।

ବସ୍ତି ବାସିନ୍ଦାଙ୍କ ପାଇଁ ସରକାର କରିଥିବା ଆଇନ ଉଦ୍ଦେଶ୍ୟ ମହତ ହେଲେ ସମସ୍ୟା ସଂପର୍କରେ ନ ଜାଣିଥିବା ଅବା ସମସ୍ୟା ସମାଧାନ ପରିଷ୍କାର ନଥିବା ଏକ ପ୍ରକ୍ରିୟା ବୋଲି ମନେହୁଏ । ସରକାର ଅନେକ ଆଇନ ତରବରରେ କରିଥାନ୍ତି ଓ ବାରମ୍ବାର ସଂଶୋଧନ କରିଥାନ୍ତି । ସେହି ଦୃଷ୍ଟିରୁ ଏହି ପ୍ରଣୀତ ଆଇନ (The Odisha Land Rights to slum dweller Act. 2017) କୁ ବରଣ କରାଯାଇପାରେ । ଏଣୁ ସ୍ୱାଗତ କରିବା ସହିତ ଏହାର ଆବଶ୍ୟକ ସଂଶୋଧନ କରାଯାଇ ବସ୍ତିବାସିନ୍ଦାଙ୍କୁ ଏକ ମର୍ଯ୍ୟାଦାଯୁକ୍ତ ବାସଗୃହ ଓ କର୍ମକ୍ଷେତ୍ର ଯୋଗାଇ ଦେବାର ବ୍ୟବସ୍ଥା ହେବା ଦରକାର ।

✿✿✿

# ନଗର ସଭ୍ୟତା ଓ ସେବାକାରୀଙ୍କ ବସ୍ତୀ ଉନ୍ନୟନ

କେବଳ ଭାରତ ନୁହେଁ, ସମଗ୍ର ବିଶ୍ୱରେ ନଗର ସଭ୍ୟତାର ବିକାଶ ସହିତ ବସ୍ତି ଉପସ୍ଥାନ ରହି ଆସିଛି । ଭାରତ ନଗରମାନଙ୍କରେ ଏହି ବସ୍ତି ସଂଖ୍ୟା ବା ସମସ୍ୟା ଅନେକ ଚିନ୍ତାର କାରଣ ହେଉଛି । କାରଣ ପାଶ୍ଚାତ୍ୟ ଦେଶମାନଙ୍କର ନଗର ବ୍ୟବସ୍ଥା ତାଙ୍କ ଜୀବନଶୈଳୀର ଅଂଶବିଶେଷ । ମାତ୍ର ଭାରତରେ 'ଗ୍ରାମ୍ୟ' ସଭ୍ୟତା ଅଧିକ ଉପଲବ୍ଧ ଓ ନଗରଗୁଡ଼ିକ ଗୋଟିଏ ଔପନେବେଶୀକ (Colonial) ଶାସନ ବ୍ୟବସ୍ଥାର ସମର୍ଥନରେ ଜନ୍ମ ଦେଇଛି । ଅତୀତର ରାଜା ମହାରାଜାମାନେ ହୁଅନ୍ତୁ ବା ମୋଗଲ, ପଠାଣ, ଇଂରେଜମାନେ ବସବାସ କରୁଥିବା ରାଜଧାନୀ, କାଣ୍ଟନମେଣ୍ଟ ବା ସେନାଛାଉଣୀ ଅଞ୍ଚଳ ହେଉ ସେ ସବୁର ଚତୁଃପାର୍ଶ୍ୱରେ ଗୁଡ଼ିଏ ସେବାକାରୀଙ୍କୁ ରଖିଥାନ୍ତି, ହାଟ ବଜାର ବସାଇଥାନ୍ତି । ମନ୍ଦିର ସହରମାନଙ୍କରେ ମଧ୍ୟ ଅନେକ ସେବାକାରୀଙ୍କୁ ରଖାଇବାର ଆବଶ୍ୟକତା ଉପଲବ୍ଧି କରାଯାଇଥିଲା । ଏହିସବୁ ନଗର ବା ସହରାଞ୍ଚଳରେ ଦୋକାନ ବଜାର ଓ ଆବଶ୍ୟକୀୟ ପଦାର୍ଥ ପ୍ରସ୍ତୁତ ତଥା ବିକ୍ରୀ କରିବା ନିମନ୍ତେ ଅନେକ ସହରାଭିମୁଖି ହୋଇଥାନ୍ତି । ରାଜ କର୍ମଚାରୀ ହୁଅନ୍ତୁ ବା ସରକାରୀ କର୍ମଚାରୀ ହୁଅନ୍ତୁ ସ୍ଥାୟୀ ଓ ଅସ୍ଥାୟୀଭାବେ ରହିଥାନ୍ତି । ଏଣୁ ନଗର ସଭ୍ୟତା ଭିତରେ ସେବାକାରୀ, ସ୍ୱଳ୍ପଆୟକାରୀମାନଙ୍କର ଏକ ଅଂଶ ସବୁବେଳେ ସାବ୍ୟସ୍ତ ହୋଇ ଆସିଛି ।

ପରବର୍ତ୍ତୀ ଅବସ୍ଥାରେ ସହର ବା ନଗରାଞ୍ଚଳରେ, ମିଳୁଥିବା ସୁବିଧା ଓ ଚାକିରୀ ଅନ୍ୱେଷଣରେ ଆସୁଥିବା ଲୋକଙ୍କ ଗୋଟିଏ ବଡ଼ ସୁଯୋଗ ଆଣି ଦେଇଛି ଯେଉଁଥିପାଇଁ ସ୍ଥାୟୀ ବାସିନ୍ଦା ଓ ଅସ୍ଥାୟୀ ବାସିନ୍ଦାଙ୍କ ସଂଖ୍ୟା କ୍ଷୀପ୍ରଗତିରେ ବୃଦ୍ଧି ପାଇବାରେ ଲାଗିଛି । ଯେପରିଭାବେ ନଭସ୍ପର୍ଶୀ ପ୍ରାସାଦମାନ ସୃଷ୍ଟି ହେଉଛି ସେହିପରି ଭାବେ ବସ୍ତି ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । ଏ ସଂପର୍କରେ କୌଣସି ସଂଖ୍ୟା ତଥ୍ୟ ଦେଇ ପାଠକଙ୍କୁ ଭାରାକ୍ରାନ୍ତ କରିବା ଉଚିତ୍ ନୁହେଁ । କାରଣ ସହର ବା ନଗରମାନଙ୍କରେ ସଂଖ୍ୟା ବଢ଼ି ଚାଲିଛି । ସହର ବା ନଗରର ଆୟତନ ଦୃତଗତିରେ ବୃଦ୍ଧି ଘଟୁଛି । ଲୋକସଂଖ୍ୟା ମଧ୍ୟ ସେହି ଅନୁପାତରେ ବଢୁଛି । ବସ୍ତି ବାସିନ୍ଦାଙ୍କ ସଂଖ୍ୟା ବୃଦ୍ଧି ସହିତ ନୂଆ ନୂଆ ବସ୍ତି ଗଢ଼ି ଉଠୁଛି । ଏଣୁ ଆଜିର ହିସାବ କାଲିକୁ ଫରକ ପଡ଼ିଯାଇଥାଏ ।

ଭୁବନେଶ୍ୱର କଥା ବିଚାରକୁ ନିଆଯାଉ । ଏହି ନଗରଟି ଏବେ କେନ୍ଦ୍ର ଘୋଷିତ ସ୍ମାର୍ଟସିଟିର ମାନ୍ୟତା ପାଇଛି । ଏପରିକି ବିଶ୍ୱବଜାରରେ ଏହାର ମାନବୃଦ୍ଧି

ପାଇବା କଥା ପ୍ରଚାରିତ ହେଲାଣି । ଅନେକ ବାଧାବିଘ୍ନ ସତ୍ତ୍ୱେ ଐତିହାସିକ ସ୍ଥଳୀ ମନ୍ଦାରମାଳିନୀ ଛୋଟ ପର୍ଯ୍ୟଟନ କ୍ଷେତ୍ରଟିକୁ ଓଡ଼ିଶାର ରାଜଧାନୀଭାବେ ନିର୍ଣ୍ଣୟ କରିବାରେ ସ୍ୱର୍ଗତ ନେତା ପ୍ରାକ୍ତନ ପ୍ରଧାମନ୍ତ୍ରୀ ତଥା ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ଦୂରଦର୍ଶୀତାକୁ ଯେ କେହିଁ ନମସ୍କାର କରିବେ । ମାତ୍ର ୪୦ ହଜାର ଲୋକଙ୍କୁ ନେଇ ନଗର ରାଜଧାନୀର ପ୍ରଥମ ଯୋଜନା ଅଳ୍ପ କିଛି ବର୍ଷ ଭିତରେ ୪୦ ଲକ୍ଷ ଲୋକଙ୍କର ନଗର ମାନ୍ୟତା ନେବାକୁ ଯାଉଛି । ପୂର୍ବ, ପଶ୍ଚିମ ଉତ୍ତର ଦକ୍ଷିଣ ସବୁ ଦିଗରେ ବଢ଼ି ଚାଲିଛି । ହଜାର ହଜାର ବହୁତଳ ବିଶିଷ୍ଟ ପ୍ରାସାଦ ମାନ କାୟା ଗଢ଼ି ଉଠିଛି । ଆଗେ କେବଳ କିଛି ସରକାରୀ କର୍ମଚାରୀଙ୍କ ସରକାରୀ ବାସସ୍ଥଳୀରେ ଓ ଅଳ୍ପ କେତୋଟି ସରକାରୀ କାର୍ଯ୍ୟାଳୟ ଥିବା ସହର ଅବା କାଁ ଭାଁ ଗୋଟିଏ ଦୁଇଟି ହୋଟେଲ ତଥା ତତ୍‌କ୍ଷଣାତ୍ ଆବଶ୍ୟକତା ମେଣ୍ଟାଇବା ପାଇଁ ଦୋକାନ ଥିଲା । ଏବେ ବହୁ ଶିଳ୍ପପତି, ପୁଞ୍ଜି ନିବେଶକାରୀ, ବ୍ୟବସାୟିକ ବାଣିଜ୍ୟସ୍ଥଳୀ ଓ କର୍ମସ୍ଥଳୀରେ ଭରି ଉଠିଛି । ସେହିସବୁ ବଡ଼ଲୋକି କାଇଦା କଟକଣା ଅନୁସାରେ ଯାହାସବୁ ଆବଶ୍ୟକ ସବୁଥିରେ ସ୍ୱଳ୍ପ ବେତନଭୋଗୀ ସେବାକରୀଙ୍କର ଆବଶ୍ୟକତା ବୃଦ୍ଧି ପାଇଛି । ହଜାର ହଜାର ସଂଖ୍ୟାର ଛାତ୍ରଛାତ୍ରୀଙ୍କ ଆବଶ୍ୟକତା ଭିନ୍ନ । ମଧ୍ୟବିତ୍ତ, ନିମ୍ନ ମଧ୍ୟମ ବର୍ଗ ପରିବାର ମାନଙ୍କର ଆବଶ୍ୟକତାରେ ଭିନ୍ନତା ଅଛି । ବଡ଼ ଲୋକ ଥିଲାବାଲାଙ୍କ ଆବଶ୍ୟକତା ମଧ୍ୟ ଭିନ୍ନ । ଏସବୁ ପୂରଣ ପାଇଁ ଯେଉଁମାନେ ସହରରେ ଠୁଳ ହୋଇଛନ୍ତି ସେମାନଙ୍କ ମଧ୍ୟରେ ନିର୍ମାଣ ଶ୍ରମିକ, ମୁଲିଆ, ଟ୍ରଲି, ଟେମ୍ପୋ, ଟ୍ୟାକ୍‌ସିବାଲା, ସବୁବର୍ଗର ସେବାକାରୀ ଯଥା ଲୁଗାସଫାଇ ବିଉଟି ପାର୍ଲରଠାରୁ ସାଧାରଣ ବାଳକାଟିବା ଲୋକ, ଫାଷ୍ଟଫୁଡ୍ ଠାରୁ ଆରମ୍ଭ କରି ରାସ୍ତାକଡ଼ର ଗୁପ୍‌ଚୁପ୍, ଚ' ଅଣ୍ଡା ଦହିବରା ଆଦି ବିକାଳି ଓ ସଫେଇ କର୍ମଚାରୀ, ବଡ଼ ଦୋକାନର ଛୋଟ କର୍ମଚାରୀଙ୍କର ସମାଗମ ହେଉଛି ଏବଂ ଏମାନଙ୍କର ମୁଖ୍ୟତଃ ବସ୍ତି ଅଞ୍ଚଳ । ସହର ଭିତରଟା ପୁରାପୁରି ଓମ୍‌ଫେଡ୍, ମିଲ୍‌କି ମୁଁ ବା ଅମୂଲ କ୍ଷୀର ଯୋଗାଣ ଉପରେ ନିର୍ଭରଶୀଳ ହେଲେ ମଧ୍ୟ ତତ୍‌କ୍ଷଣାତ୍ ଗାଈକ୍ଷୀର ପାଇଁ ଗୋପାଳକଙ୍କର ଭିଡ଼ ମଧ୍ୟ ବସ୍ତି ମାନଙ୍କରେ ଦେଖିବାକୁ ମିଳୁଛି । ରିଲାଏନ୍‌ସ୍ ଫ୍ରେସ୍ ବା ଉଦ୍ୟାନ ଫ୍ରେସ୍‌ରେ ପରିବା ବିକ୍ରି ହେଉ ଅବା ଚିଲିକା ଫ୍ରେସ୍‌ରେ ମାଛ ଶୁଖୁଆ ବିକ୍ରୀ ହେଉ ରାସ୍ତାକଡ଼ର ବା ଦାଣ୍ଡରେ ଯାଉଥିବା ବିକ୍ରେତାଙ୍କ ସଂଖ୍ୟା କମିବାର ନାହିଁ ।

ସମସ୍ତେ ବସା ବାନ୍ଧିଛନ୍ତି ବସ୍ତି ଭିତରେ । ବସ୍ତି ଉଚ୍ଛେଦର ପରିକଳ୍ପନା ଅତ୍ୟନ୍ତ ଅବାସ୍ତବ । କାରଣ ସହର ନାଗରୀକ ମାନଙ୍କର ଘର ପୋଛାପୋଛିଠାରୁ ଆରମ୍ଭ କରି ସମସ୍ତ ଆବଶ୍ୟକତା ପୂରଣ ପାଇଁ ଏମାନଙ୍କୁ ଖୋଜାପଡ଼େ । ବରଂ

ଗୋଟିଏ ନଗରର ସ୍ମାର୍ଟନେସ୍ ତା'ର ପରିମଳ ଓ ବସ୍ତିର ରହଣିଶୈଳୀ ଉପରେ ନିର୍ଭର କରିଥାଏ ।

ସହରରେ ବସ୍ତିବାସିନ୍ଦାଙ୍କ ପାଇଁ ଗୋଟିଏ ଗୃହଯୋଜନା କାର୍ଯ୍ୟକାରୀ ହେଉଛି । ସେଥିମଧ୍ୟରେ ମୁଖ୍ୟତଃ ରାଜୀବଗାନ୍ଧି ସହରାଞ୍ଚଳ ଗୃହଯୋଗାଣ ଯୋଜନା, ବିଜୁ ପଟ୍ଟନାୟକ ସହରାଞ୍ଚଳ ଗୃହ ଯୋଗାଣ, ପ୍ରଧାନମନ୍ତ୍ରୀ ନଗରାଞ୍ଚଳ ଗୃହ ଯୋଜନା ଅନ୍ତର୍ଭୁକ୍ତ । ବହୁତଳ ବାସସ୍ଥଳୀ ନିର୍ମାଣ କରାଯାଉଛି ଏହା ଯେପରି ସଂକୀର୍ଣ୍ଣ ସେହିପରି ବାସ ଉପଯୋଗୀ ନୁହେଁ । ଜଣେ ରାଜମିସ୍ତ୍ରୀ ବା ରାଜମୂଲିଆ ଏକାକୀ ଏ ଘରେ ରହିପାରେ ମାତ୍ର ଯେଉଁ ଧୋବା ଲୁଗା ସଫା କରୁଛି ସେ ଗୋଟିଏ ଜାଗା ଚାହେଁ । ଲୁଗା ସଫାକରିବା, ସୁଖାଇବା ଏବଂ ଇସ୍ତ୍ରି କରିବାର କର୍ମଶାଳାଟିଏ ପାଇଁ । ଯିଏ ଠେଲାଗାଡ଼ିଟିଏ କରିଛି, ଟ୍ରଲି କରିଛି ଟେମ୍ପୋ ବା ଟ୍ୟାକ୍‌ସି ଚଳାଏ ଏଗୁଡ଼ିକ ସେ କେଉଁଠାରେ ରଖିବ । ଯିଏ କିଛି ଗାଈ ରଖିଛି ସେ ସେମାନଙ୍କୁ ରଖିବ କେଉଁଠି । ଅବା ଯିଏ ଦିନସାରା ଖଟି ଖଟି ଫେରିବ ପାଞ୍ଚ, ଛଅ ମହଲା ଉପରକୁ ଉଠିବାବେଳେ ସେ କଷ୍ଟ ଅନୁଭବ କରିବ । ତା' ପାଇଁ ବିଦ୍ୟୁତ୍ ଚାଳିତ ସିଡ଼ି (Lift) ତ ନାହିଁ । ସେହିପରି ସହର ତ ବ୍ୟାପୁଛି । ଯେଉଁ ଅଞ୍ଚଳ ଦିନେ ବସ୍ତିବାସିନ୍ଦାଙ୍କ ପାଇଁ ଚିହ୍ନଟ ହୋଇଥିଲା,(ଭରତପୁର) ତା'ର ଆଖପାଖରେ ବର୍ତ୍ତମାନ ସୁରମ୍ୟ ପ୍ରସାଦମାନ ଗଢ଼ି ଉଠିଲାଣି । ସହରର ସବୁ ଅଞ୍ଚଳ ମୂଲ୍ୟବାନ ବାସଉପଯୋଗୀ ବୋଲି ବିବେଚିତ ହୋଇଥାଏ । ତେବେ କ'ଣ ଭରପୁର ବସ୍ତିବାସିନ୍ଦାକୁ ସେଠାରୁ ଅନ୍ୟତ୍ର ନିଆଯିବ ?

ବସ୍ତିବାସିନ୍ଦାଙ୍କ ସ୍ଥାୟୀ ସୁରକ୍ଷା, ସ୍ୱଚ୍ଛ ଓ ସୁସ୍ଥ ପରିବେଶ, ଗୋଟିଏ ଉଚ୍ଚ ମାନର ଜୀବନ (Life with dignity) କୁ ଦେଖି ସହରର ସବୁ ୟୁନିଟ୍ ଭିତରେ ରହିଥିବା ବସ୍ତିଗୁଡ଼ିକୁ ସଜାଡ଼ିବା ଦରକାର । ଯେପରିକି ସମସ୍ତ ଅଞ୍ଚଳ ପରିଷ୍କାର ପରିଚ୍ଛନ୍ନ ରହିବା ସହିତ ବସ୍ତିବାସିନ୍ଦାଙ୍କ ସେବା ଯୋଗାଣ ସହଜଲବ୍ଧ ହେବ । ସହର ଭିତର ଦେଇ ବୋହି ଯାଉଥିବା ସଫେଇ କୂଳରେ ଅନେକ ବଡ଼ ବଡ଼ ବସ୍ତି ସତେ ଯେପରି ପ୍ରାକୃତିକ ଧାରାରେ ଗଢ଼ି ଉଠିଛି । ଉଦାହରଣ ସ୍ୱରୂପ ଶାନ୍ତିପଲ୍ଲୀ, ବାୟାବାବା ବସ୍ତି, ସାଇନ୍‌ସ ପାର୍କ ବସ୍ତି, ମଇଁଷିଆଖାଲ, ପଥରବନ୍ଧ ଆଦି ବସ୍ତିର ଉପସ୍ଥିତି କଥା ବିଚାର କରାଯାଇପାରେ । ଭୁବନେଶ୍ୱର ଭିତର ଦେଇ ୧୦ଗୋଟି ମୁଖ୍ୟ ସଫେଇ ନାଳବୋହି ଯାଉଛି । ତା'ର କୂଳରେ ଅଧିକାଂଶ ବସ୍ତି ସ୍ଥାପିତ ହୋଇଛି ଓ ଅନେକ ଜାଗା ଅବ୍ୟବହୃତ ହୋଇ ପଡ଼ିଛି ।

ମନେହୁଏ ସେହିସବୁ ସ୍ଥାନରେ ଥିବା ସମସ୍ତ ବସ୍ତିବାସିନ୍ଦାଙ୍କୁ ରହିଥିବା ସ୍ଥାନରେ ରଖିବାର ଭଲ ଯୋଜନା ଓ ସୁପରିଚାଳନା କଲେ ସେମାନଙ୍କର ଆବଶ୍ୟକତା ବର୍ତ୍ତମାନ ରହିଥିବା ଅଧାରୁ କମ୍ ଜାଗାରେ ପୂରଣ ହୋଇପାରିବ । ବସ୍ତି ଆନ୍ଦୋଳନକାରୀମାନେ ପ୍ରତ୍ୟେକ ବସ୍ତିବାସିନ୍ଦାଙ୍କୁ ଚିହ୍ନଟ କରି ପରିବାର ପିଛା ୩୭୦ବର୍ଗ ଫୁଟ୍ ପଟ୍ଟା ଦେବାକୁ ଦାବୀ କରୁଛନ୍ତି । ମାତ୍ର ୪୫୦ ବର୍ଗ ଫୁଟ୍ ଅଞ୍ଚଳରେ ତିନିଥାକିଆ ଘର କରାଯାଇ ତିନିଗୋଟି ପରିବାରକୁ ବେଶ୍ ଭଲଭାବେ ବାସ ଉପଯୋଗୀ ଘର ଯୋଗାଯାଇ ପାରିବ ଏବଂ ଭୂପୃଷ୍ଠ ମାହାଲାଟି ମୁକ୍ତ ରହି ସେମାନଙ୍କର ଆବଶ୍ୟକତା କର୍ମଶାଳା, ଗାଡ଼ି ରଖିବା ସ୍ଥଳୀର ମେଣ୍ଟାଇବାରେ ସାହାଯ୍ୟ କରିବ । ଏହି ମାହାଲାଟି ମୁକ୍ତ ରହିଲେ ଘର ତିଆରି ଖର୍ଚ୍ଚରେ ମଧ୍ୟ ରିହାତି ମିଳିବ । ମାତ୍ର ଏମାନଙ୍କୁ ପଟ୍ଟା (Record of Right) ଦିଆ ନଯାଇ ଦୀର୍ଘମିଆଦି ସୂତ୍ରରେ ଅଧିକାର (Record of Passession and Maintainance) ଦିଆଯାଇ ପାରିବ । ଫଳତଃ ପ୍ରତ୍ୟେକ ପରିବାର ନିଜକୁ ସୁରକ୍ଷିତ ମଣିବେ ।

ସେମାନଙ୍କ କାର୍ଯ୍ୟଶାଳାରୁ ନିର୍ଗତ ବର୍ଯ୍ୟବସ୍ତୁ ନାଳ ପାଖରେ ଛାଣିହୋଇ ରହିବ ଓ ପାଣି ନାଳକୁ ଚାଲିଯିବ । ଏହି ବର୍ଯ୍ୟବସ୍ତୁ ନିଜ ବାସଗୃହ ସହିତ ସଂଲଗ୍ନ ହୋଇ ରହିବ । ସମସ୍ତ ବସ୍ତି ବାସିନ୍ଦାଙ୍କ ପାଇଁ ଗୋଟିଏ ଭଲ ରାସ୍ତା, ବିଦ୍ୟୁତ୍ ଯୋଗାଣ ବା ସୌର ବିଦ୍ୟୁତ୍ ବ୍ୟବସ୍ଥା ଉତ୍ତମଭାବେ କରାଯାଇ ପାରିବ ଓ ଘରର ଆଗପଛ ଭାଗରେ ସବୁଜ ବଳୟ ରଖାଯାଇ ପାରିବ ।

ଗୋଟିଏ ସରକାରୀ ନିଷ୍ପତ୍ତି ସମ୍ବାଦପତ୍ର ମାନଙ୍କରେ ପ୍ରକାଶିତ ହୋଇଛି । ସତ୍ୟନଗର / ସହୀଦ୍ ନଗର ଶାନ୍ତିପଲ୍ଲୀର ୧୯ ଏକର ଜମି ସାଧାରଣ ପ୍ରଶାସନ ବିଭାଗ ବସ୍ତି ନିର୍ମାଣପାଇଁ ହସ୍ତାନ୍ତର କରିଛି । ଏହାଯଦି ସୁପରିକଳ୍ପିତ ଯୋଜନା (୪୦୦ବର୍ଗଫୁଟ୍‌ରେ ତିନିଗୋଟି ପରିବାର ରହିବା ଓ ତଳଘର କାର୍ଯ୍ୟସ୍ଥଳୀ) ଅନୁସାରେ କରାଯାଏ ସେହି ବସ୍ତୀର ବାସିନ୍ଦାଙ୍କ ନିମନ୍ତେ ବା ଗୃହ ଯୋଗାଇ ଦିଆଯାଇ ପାରିବ ।

ସେବା ଯୋଗାଇବା ପାଇଁ, ଜୀବିକା ଅର୍ଜନ ପାଇଁ, ସ୍ୱଳ୍ପ ଆୟକାରୀ ଲୋକମାନଙ୍କୁ ଭଲ ବାସସ୍ଥାନଟିଏ ଯୋଗାଇ ଦେବାନିମନ୍ତେ ଅନେକ ସାମାଜିକ ସଂଗଠନ ଆନ୍ଦୋଳନ କରୁଛନ୍ତି । ଏହା ଅତ୍ୟନ୍ତ ସ୍ୱାଗତଯୋଗ୍ୟ । ବସ୍ତୀ ଉନ୍ନୟନ ବା ବସ୍ତୀ ବାସିନ୍ଦାଙ୍କୁ ସୁରକ୍ଷା ପାଇଁ ଆନ୍ଦୋଳନ କରୁଥିବା ସମସ୍ତ ସଚେତନ ନାଗରୀକ ଓ ଗଣ ସଂଗଠନମାନଙ୍କ ସହଯୋଗ ନେଇ ସରକାର ଓ ନଗରପାଳିକାମାନେ ବସ୍ତି

ଯୋଜନା ପ୍ରଣୟନ ଓ କାର୍ଯ୍ୟକାରୀ କରିବା ଦରକାର । କୋଟି କୋଟି ଟଙ୍କା ଦେଇ ଟାଟା ଓ ଖଡ଼ଗପୁର ଆଇ.ଆଇ.ଟି. ଦ୍ୱାରା ପ୍ରସ୍ତୁତ ଭୁବନେଶ୍ୱର ମାଷ୍ଟର ପ୍ଲାନ୍ ଏବେବି କାର୍ଯ୍ୟରେ ଲାଗିପାରୁ ନାହିଁ । ସହରକୁ ସ୍ୱଚ୍ଛ ନିର୍ମଳ ରଖିବା, ବାବୁ ଭାୟା ମାନଙ୍କର ଆବଶ୍ୟକତା ପୂରଣ କରିବା, ସ୍ୱଚ୍ଛ ଆୟକାରୀ, ଜୀବିକା ନିର୍ବାହ ଉଦ୍ଦେଶ୍ୟରେ ଠୁଳ ହେଉଥିବା ଖଟିଖିଆ, ସେବାକାରୀ ମାନଙ୍କୁ ଭଲରେ ରଖିବା ନିମନ୍ତେ ବସ୍ତି ସଜାଡ଼ିବାର ସମୟ ଆସିଛି । କେବଳ ଅର୍ଥ ଆବଶ୍ୟକତା ନୁହେଁ କାର୍ଯ୍ୟକାରୀ କରିବାର ମାନସିକତା ହିଁ ଦରକାର । ଯୋଜନାକାରୀ, ଶାସକ, ପ୍ରଶାସକ ଅଳ୍ପକ୍ଷଣପାଇଁ ଭାବିଲେ ଅନେକ ସୁଗମ ରାସ୍ତା ଦୃଷ୍ଟି ଗୋଚର ହେବ ଏବଂ କମ୍ ଅର୍ଥବ୍ୟୟରେ ବହୁତ ଲୋକଙ୍କ ପାଇଁ ସୁବିଧା ଜନକ ବାସସ୍ଥଳି ଯୋଗାଯାଇପାରିବ । ଛୋଟ ଛୋଟ ବସ୍ତିଗୁଡ଼ିକୁ ପାଖ ବସ୍ତିସହ ସାମିଲ କରାଯାଇ ଅନେକ ସମସ୍ୟାର ସମାଧାନ ସୂତ୍ର ବାହାରିପାରିବ । ସରକାର ନଗର ମଧ୍ୟରେ ଅନେକ ମୂଲ୍ୟବାନ ଜମି ମଧ୍ୟ ଅନ୍ୟ କାର୍ଯ୍ୟପାଇଁ ପାଇପାରିବେ । ରାଜ୍ୟର ସବୁ ସହର ବା ନଗରର ସମସ୍ୟା ଏକ ନୁହେଁ ଅବା ପରିସ୍ଥିତି ଏକନୁହେଁ । ସେଥିପାଇଁ ସାମାନ୍ୟ ସାମାନ୍ୟ ପରିବର୍ତ୍ତନରେ ସବୁ ସହର ବା ନଗରରେ ସଂସ୍କୃତି ସମ୍ପନ୍ନ ବସ୍ତିମାନ ତିଆରି ହୋଇ ପାରିବ ।

✿✿✿

# ଆସ ଆମେ ବସ୍ତି ସଜାଡ଼ିବା (୧)

ନଗର ସଂସ୍କୃତିରେ ଦୁଇଟି ବିପରୀତମୁଖି ଅବସ୍ଥା ତଥା ସମାଜ ଦେଖିବାକୁ ମିଳିଥାଏ । ଗୋଟିଏ ପକ୍ଷରେ ଉଚ୍ଚ ଆୟ ବର୍ଗର ଅବସ୍ଥିତି ଅନ୍ୟପକ୍ଷରେ ନିମ୍ନ ଆୟକାରୀ ସେବା ଯୋଗାଉଥିବା ଗୋଷ୍ଠି । ଏହି ଦ୍ୱିତୀୟ ଗୋଷ୍ଠିଟି ସହର କିମ୍ବା ନଗରର ଅଳିଆ ଅବର୍ଜନା ସଫା କରିବାଠାରୁ ଆରମ୍ଭ କରି ପ୍ରତ୍ୟେକ ବାବୁଭେୟାମାନଙ୍କ ଘର ପର୍ଯ୍ୟନ୍ତ ଯାବତୀୟ ଅଳିଆ ଆବର୍ଜନା ସଫା କରିବାରେ ସହାୟତା ଦେଇଥାନ୍ତି । ଅଧିକନ୍ତୁ ସହରର ଦ୍ରୁତ ବିକାଶ ନିମନ୍ତେ ମିସ୍ତ୍ରି ମୂଲିଆ ହୋଇ ପେଟପାଇଁ ଉପାର୍ଜନ କରିଥାନ୍ତି । ଏତଦ୍‌ବ୍ୟତୀତ କଳକାରଖାନା ଦୋକାନ ବଜାର ଓ ସରକାରୀ ଦପ୍ତରରେ କାର୍ଯ୍ୟ କରୁଥିବା ସ୍ୱଳ୍ପ ଆୟକାରୀମାନଙ୍କ ସଂଖ୍ୟା ସହରମାନଙ୍କରେ ଦିନକୁ ଦିନ ବଢ଼ି ଚାଲିଛି । ରୋଜଗାର ଅନ୍ୱେଷଣରେ ସହରରେ ଜମାଟ ବାନ୍ଧିଥିବା ଲୋକେ ବାଳକାଟିବା, ଲୁଗା ସଫାକରିବା ଆଦି ସେବାକାର୍ଯ୍ୟ ସମେତ ଛୋଟ ଛୋଟ ଦୋକାନ, ବୁଲା ବିକାଳିଙ୍କ ସଂଖ୍ୟା ମଧ ନଗରର ଲୋକସଂଖ୍ୟା ବୃଦ୍ଧି ଅନୁସାରେ ବୃଦ୍ଧି ପାଇଥାଏ । ସହର ଭିତରେ ଅନ୍ୟଏକ ଆୟକାରୀ ଗୋଷ୍ଠୀ ହେଉଛନ୍ତି ଗୋକ୍ଷୀର ଯୋଗାଉଥିବା ଦୁଗ୍ଧ ବ୍ୟବସାୟୀମାନେ । ସାଂସ୍କୃତିକ ଚେତନାରେ ଗ୍ରାମ୍ୟ ସଂସ୍କୃତିକୁ ଧାରଣା କରିଥିବା ସହରୀବାବୁମାନେ ପୂର୍ଣ୍ଣମାତ୍ରାରେ 'ଗ୍ରାମୀଣ' ସଂସ୍କୃତି ଆଧାତ୍ମିକ ସଂସ୍କୃତିର କାର୍ଯ୍ୟମାନ ପାଳନ କରିଥାନ୍ତି । କେତେବେଳେ ଗୋ ମୂତ୍ର, କେତେବେଳେ ଗାଇ ଗୋବର ତ ଗୋରସର ଆବଶ୍ୟକତା ସହରି ମୂଳକରୁ ପୁରାପୁରି ଲୋପ ପାଇନାହିଁ । ଏହି ଦ୍ୱିତୀୟ ବର୍ଗର ଲୋକେ ସ୍ୱଳ୍ପ ରୋଜଗାର ଭିତରେ କୁଟୁମ୍ବ ପୋଷିଲାବେଳେ ଟୁଂଗୀ, ଝୁମ୍ପୁଡ଼ି,, ସିଂପ୍ରତି, ପାଲ ଘେରା, ତାଟି ଘେରା, ଟିଣ ଘେରା ଘର ଖଣ୍ଡିକରେ ଅବା ସେହିପରି ଦୟନୀୟ ସ୍ଥିତିରେ ରହିବାକୁ ବାଧ୍ୟ ହୋଇଥାନ୍ତି । ସେଠାରେ ଦିନରେ ବି ଅନ୍ଧାର ଘେରି ରହିଛି । ଅଳିଆ ଆବର୍ଜନା ସଫା କରୁଥିବାମାନେ ଅଳିଆ ଆବର୍ଜନା ଭିତରେ ପଡ଼ି ରହନ୍ତି । ଭଲ ମୁନ୍ଦାଏ ପିଇବା ପାଣି ତାଙ୍କ ଭାଗ୍ୟରେ ଜୁଟେ ନାହିଁ । ବିଦ୍ୟୁତ୍ ବ୍ୟବସ୍ଥା ଅନେକ ସମୟରେ ଅନେକ ଜାଗାରେ ନଥାଏ । ପରିମଳ ବ୍ୟବସ୍ଥା ସଂପର୍କରେ କହିଲେ ନ ସରେ ।

ଅପରପକ୍ଷରେ ପ୍ରଥମ ବର୍ଗର ଥିଲାବାଲା ଶ୍ରେଣୀର ନଗର ବାସିନ୍ଦା ନଉଷ୍ଣୁମ୍ମୀ ଶୀତତାପ ନିୟନ୍ତ୍ରିତ ଘରେ ରୁହନ୍ତି । ଗାଡ଼ିର କାଚଟେକି ରାସ୍ତାରେ ଯାଆନ୍ତି । ସଦାସର୍ବଦା

ରହୁଁାନ୍ତି ସୁସ୍ଥ ପରିବେଶ, ନିର୍ମଳ ଜଳବାୟୁ ଓ ଶୃଙ୍ଖଳିତ ଜୀବନ । ଏଥିସହିତ ସେମାନେ ଚାହାନ୍ତି ହାତ ପାଆନ୍ତାରେ ସେବା ଓ ଉନ୍ନତ ମାନର ନଗରୀ ବ୍ୟବସ୍ଥା । ସେମାନଙ୍କର ଧାରଣା ରହିବା ଦରକାର ଯେ ଏଥିପାଇଁ ଦ୍ୱିତୀୟବର୍ଗର ଲୋକଙ୍କର ଆବଶ୍ୟକତା ଅଛି । ଘରକୁ ବାସନ ମାଜିବାକୁ ଡାକିଲାବେଳେ ଅତି କଅଁଳେଇ ଡାକନ୍ତି । ତାଙ୍କ ବସ୍ତିକୁ ଗଲେ ନାକ ଟେକନ୍ତି । ସେଇମାନଙ୍କର ସେବା ଚାହାନ୍ତି, ଯେଉଁମାନଙ୍କର ଅସନା ପରିବେଶକୁ ଘୃଣା କରି ନାକ ଟେକନ୍ତି । ଆଦୌ ବୁଝିପାରନ୍ତି ନାହିଁ ସେହି ସବୁ ବସ୍ତିରେ ଘୁରି ବୁଲୁଥିବା କୁକୁର ତାଙ୍କ ଘରର କୁକୁରପରି ସଫାସୁତୁରା ନୁହେଁ । ସେ ନିଶ୍ଚୟ ରାସ୍ତାକୁ ଆସିବ ଓ ପରିବେଶ ଅସନା କରିବ । ସେମାନେ ଭୁଲି ଯା'ନ୍ତି ଯେ ଏହି ଅସୁସ୍ଥ ପରିବେଶ ଭିତରେ ଥିବା ରୁଗ୍ଣ ଲୋକମାନେ ତାଙ୍କ ଘରକୁ ଆସିଥାନ୍ତି । ତାଙ୍କ ରୋଷେଇ ଘରଠାରୁ ଅଗଣା ଓ ଘରେ ସେବା ଦେବାପାଇଁ ପ୍ରବେଶ କରିଥାନ୍ତି । ସେମାନେ ଭୁଲି ଯାଇଥାନ୍ତି ଯେ ଏମାନେ ଦୂର ଜାଗାରୁ ଆସିଲେ ସେମାନଙ୍କୁ ସେବା ଯୋଗାଇବାରେ ଅବହେଳା ହେବ ଏବଂ ଏକ ସମୟରେ ଗୋଟିଏ ଦି'ଟି ଘର ପର୍ଯ୍ୟନ୍ତ କାର୍ଯ୍ୟ ସଂପାଦନା କରିବା ଫଳରେ ଅଧିକ ମଜୁରୀ ଦାବି କରିବେ । ସେମାନେ ଭୁଲି ଯା'ନ୍ତି ତାଙ୍କ ସାହିରେ ଜନ୍ମ ନେଉଥିବା ମଶାମାଛି, ତାଙ୍କ ପିଲାଏ ଖାଉଥିବା ଗୁପ୍‌ଚୁପ୍, ଦହିବରା ଉପରେ ବସିଥିଲେ ବା ତାଙ୍କ ଘରକୁ ଦୁର୍ଗନ୍ଧ ତଥା ରୋଗ ନେଇ ପଶି ଆସିବେ ।

ଏଇ ସବୁ ବଡ଼ ବଡ଼ ବାବୁଭୟାମାନେ ଭଲ ସେବା ଏବଂ ତତ୍‌କ୍ଷଣାତ୍ ସେବା ସହିତ ସଫା ସୁତୁରା ପରିବେଶ ଇଚ୍ଛା କରୁଥିଲେ, ମନେରଖିବା ଉଚିତ୍ ଯେ ବସ୍ତି ବାସିନ୍ଦାଙ୍କର ଆବଶ୍ୟକତା ଅଛି ଏବଂ ବସ୍ତିଗୁଡ଼ିକ ବାସ ଉପଯୋଗୀ ପରିଷ୍କାରି ପରିଚ୍ଛନ୍ନ ତଥା ଶୃଙ୍ଖଳିତ ହେବା ଦରକାର । ସେମାନେ ଛୋଟ ଘରେ ରହିପାରନ୍ତି, ମାତ୍ର ଭଲ ପରିବେଶରେ ରହିଲେ ସହର ପରିବେଶ ଭଲ, ସ୍ୱଚ୍ଛ ଓ ନିର୍ମଳ ରହିବ । ସେମାନେ ବି ମଣିଷ ପରି ରହିବା ଦରକାର । ଅର୍ଥାତ୍ ନିମ୍ନତମ ସୁବିଧା ସୁଯୋଗ ସହିତ ଜଣେ ସଭ୍ୟଭାବେ ବସ୍ତିରେ ବସବାସ କରିବ । ସେମାନଙ୍କର ଗୋଟିଏ ନିର୍ଭରଶୀଳ ପରିବାର ଅଛି । ବୁଢ଼ା ବାପ ମା' ଅଛନ୍ତି ଓ ଛୋଟ ପିଲା ଅଛନ୍ତି । ତା'ର ରହୁଥିବା ଜାଗାରେ ଗୋଟାଏ ଛୋଟ ବଖରା, ଘରେ କ'ଣ ଏମାନେ ସମସ୍ତେ ରହିବେ ଅବା ବାବୁଭାୟାଙ୍କ ଘରପରି ଲିଫ୍‌ଟ୍‌ର ବ୍ୟବସ୍ଥା ନଥାଇ ପାଞ୍ଚ ଛଅ ତାଲା ଛୋଟ ଘରେ ସଭ୍ୟଭାବେ ଚଳପ୍ରଚଳ ହେବେ । ସେମାନେ ରହୁଥିବା ସମସ୍ତ

ପରିବେଶଟି ମଧ୍ୟ ସ୍ୱଚ୍ଛ ଓ ନିର୍ମଳ ରହିବା ଦୃଷ୍ଟିରୁ ସେହି ବସ୍ତିବାସିନ୍ଦା ମଧ୍ୟ ତା' ଘରେ ଗୋଟିଏ ପାଇଖାନା ଓ ଗାଧୁଆ ଘର ଚାହେଁ । ଗୋଟିଏ ଛୋଟ ରୋଷେଇ ଘର ଚାହେଁ । ସମସ୍ତ ଯୋଜନା ପ୍ରସ୍ତୁତକାରୀମାନେ ହେଉଛନ୍ତି ଏହି ବାବୁଭାୟା ଶୀତତାପ ନିୟନ୍ତ୍ରିତ ଘରେ ରହୁଥିବା ଲୋକେ । ସହରରେ ଥିବା ଉଚ୍ଚ ବେତନଭୋଗୀ କର୍ମଚାରୀମାନଙ୍କ ପାଇଁ ଅଯଥା ଖୁବ୍ ବଡ଼ ବଡ଼ ଜାଗା ଦିଆଯାଇଛି । ସେମାନେ ଉପଭୋଗ କରନ୍ତୁ । ଯାହା ଦଶହଜାର ବର୍ଗଫୁଟ୍ ଭିତରେ 'ଡୁପ୍ଲେକ୍ସ' ଘରଥାଇ ଚଳନ୍ତା । ସେଠି ୪୦ହଜାରରୁ ଏକ ଲକ୍ଷ ବର୍ଗଫୁଟର ଘରଜାଗା କାହିଁକି ଯୋଗା ଯାଉଛି ବୁଝା ପଡ଼େନାହିଁ । ସେମାନଙ୍କର ମାଳି ଅଛି ବା ଯୋଗାଇ ଦିଆଯାଇଛି ହେଲେ ସେ ମାଳିଟି କୋଉଠି ରହିବ ସେ ବିଷୟରେ କେବେ ଥରେ ଭାବି ଚିନ୍ତା କରନ୍ତି । ତାଙ୍କ ଘରକୁ ଆସୁଥିବା ବାସନ ମଜାଳୀ, ଘର ଓଳାଉଥିବା ସ୍ତ୍ରୀଲୋକ ଅବା ରୋଷେଇଆ ରହୁଥିବା ପରିବେଶକୁ ନେଇ କେବେ ଭାବିଛନ୍ତି ?

ଏପରି ଅବସ୍ଥାର ତାରତମ୍ୟ ଥାଇ ବହୁ ଆଦିମ କାଳରୁ ନଗରୀ ସଭ୍ୟତାର ଜନ୍ମହୋଇଛି ବୋଲି ଅନେକ ଯୁକ୍ତି କରିଥାନ୍ତି । ଶିଳ୍ପ ବିପ୍ଳବ କାଳରେ ବା ଔପନିବେଶୀୟ (Colonial Rule)ରେ ଏହି ତାରତମ୍ୟ ଦ୍ରୁତଗତିରେ ବୃଦ୍ଧିପାଇଥିବା ମଧ୍ୟ କୁହାଯାଇଥାଏ । କିନ୍ତୁ ମନେ ରଖିବା ଉଚିତ୍ ଯେ ସମୟ ବଦଳୁଛି । ଆବଶ୍ୟକତା ବଦଳୁଛି । ମାନସିକତାର ପରିବର୍ତ୍ତନ ଘଟୁଛି । ସରକାର ଗଠନ ଓ ସରକାରୀ ଦାୟିତ୍ୱ ସଂପର୍କରେ ମଧ୍ୟ ସମସ୍ତେ ସଚେତନ ହେଲେଣି । ସେହିସବୁ ଦୃଷ୍ଟିରୁ ନଗରର ଓ ସହର ଗଠନର ଶୈଳୀ ଆବଶ୍ୟକତା ଭିତ୍ତିକ ହେବା ଦରକାର । ଔପନିବଶୀୟ ବା ସାମନ୍ତବାଦୀ ବ୍ୟବସ୍ଥାକୁ ନେଇ ନୁହେଁ ।



# ଆସ ଆମେ ବସ୍ତି ସଜାଡ଼ିବା ( ୨ )

ଗ୍ରାମୀଣ ସଂସ୍କୃତିରେ ଐତିହାସିକ ସ୍ୱିକୃତି ଥିବା ଓଡ଼ିଶାରେ ଏବେ ସହର ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । ଆବଶ୍ୟକତା ଓ ଆଧୁନିକତାର ମିଶ୍ର ପ୍ରକ୍ରିୟା ଜନିତ ବ୍ୟବସ୍ଥା ବଢ଼ି ଚାଲିଛି । ସହରର ଲୋକସଂଖ୍ୟା ହୁ ହୁ ବଢ଼ି ଚାଲିଛି । ସହର ବା ନଗର ମାନଙ୍କରେ ଗୋଟିଏ ସ୍ଥାନୀୟ ସଂସ୍କୃତି ଓ ଔପନେବେଶୀୟ ସଂସ୍କୃତି (Colonial Culture)ର ମିଶ୍ରଣ ଦେଖିବାକୁ ମିଳିଥାଏ । ଭୁବନେଶ୍ୱରରେ ରାଜଧାନୀ ପ୍ରତିଷ୍ଠାକାଳ ଅର୍ଥାତ୍ ୧୯୫୧ର ଜନଗଣନାରେ ମାତ୍ର ୪୦ ହଜାର ଲୋକସଂଖ୍ୟା ବିଶିଷ୍ଟ ସହର ୨୦୨୫ ବେଳକୁ ୪୧ଲକ୍ଷ ଲୋକର ଯୌଥ ସହରରେ ପରିଣତ ହେବ । କଟକ-ଭୁବନେଶ୍ୱର - ଖୋର୍ଦ୍ଧା - ଜଟଣୀ ଏକତ୍ରୀତ ହୋଇ ପୁନଶ୍ଚ ସଂପ୍ରସାରିତ ହେବ । ରାଜ୍ୟର ଅନ୍ୟ ସହରମାନଙ୍କର ମଧ୍ୟ ଜନସଂଖ୍ୟା ବୃଦ୍ଧି ପାଇଛି । ଗୋଟିଏ ସମୟରେ ସହରର ବା ନଗରର ଉପାନ୍ତ ଅଞ୍ଚଳ ବୋଲି ଯାହା ଭାବନାରେ ଥିଲା, ତାହା ଆଜି ନଗରର ମଧ୍ୟବର୍ତ୍ତୀ ଅଞ୍ଚଳ । ଏବେ ମଧ୍ୟ ଯାହା ଉପାନ୍ତ ଅଞ୍ଚଳ ବୋଲି ବିବେଚିତ ହେଉଛି ତାହା ଆସନ୍ତା କେଇବର୍ଷ ମଧ୍ୟରେ ସହରର ମୁଖ୍ୟ ଅଂଶଭାବେ ଛିଡ଼ାହେବ । ଏଣୁ ଯୋଜନାକାରୀ ଓ ଶାସକବର୍ଗ ବସ୍ତିବାସିନ୍ଦାଙ୍କ ପାଇଁ ଯୋଜନା ପ୍ରସ୍ତୁତ କରିବା ସମୟରେ କେତୋଟି କଥା ପ୍ରତି ବସ୍ତୁତଃ ଧ୍ୟାନଦେବା ଦରକାର ଅଛି । ଯେଉଁ ବସ୍ତି ବାସିନ୍ଦାକୁ ସହରରେ ମଧ୍ୟବର୍ତ୍ତୀ ଅଞ୍ଚଳରୁ ହଟାଇ ଅନ୍ୟତ୍ର ନେବାର ବ୍ୟବସ୍ଥା କରାଯାଉଛି ତାହା ମଧ୍ୟ ଦିନେ ପୁଣି ସହରୀ ବ୍ୟବସ୍ଥାରେ ବାବୁ ମାନଙ୍କର ଯୋଜନା ଓ ନିୟନ୍ତ୍ରଣ ଅଭାବରୁ ମୁଣ୍ଡବ୍ୟଥାର କାରଣ ହେବ ଏବଂ ସେମାନଙ୍କୁ ପୁନର୍ବାର ସ୍ଥାନାନ୍ତର କରିବା ବା ବିସ୍ଥାପନ କରିବାର ଆବଶ୍ୟକତା ଉଠିପାରେ । ଗୋଟିଏ ଉଦାହରଣ ନିଆଯାଇପାରେ । ଭୁବନେଶ୍ୱର ଆଭ୍ୟନ୍ତରୀଣ ଅଞ୍ଚଳରେ ଥିବା ବସ୍ତିସବୁ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିବାବେଳେ ଓ ଶ୍ରୀ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିବାବେଳେ ଭୁବନେଶ୍ୱରର ଉପାନ୍ତ ଅଞ୍ଚଳ ଭରତପୁର, ପଥରବନ୍ଧ, ପଥରଗାଡ଼ିଆ, ପଳାଶୁଣି ପଛ ଓ ଟଙ୍କପାଣି ରୋଡ଼ ମଧ୍ୟବର୍ତ୍ତୀ ତଥା ପାଣ୍ଡରା ଅନ୍ୟାନ୍ୟ ଦୂରଦୂରାନ୍ତକୁ ପଠାଇବାର ବ୍ୟବସ୍ଥା କରାଗଲା । ସେହିସବୁ ଅଞ୍ଚଳକୁ କିଛି ଅବଶ୍ୟ ଗଲେ । ନୂଆ ନୂଆ ବସ୍ତି ଗଢ଼ି ଉଠିଲା । ଏବେ ସେହି ଅଞ୍ଚଳର ସ୍ଥିତିଟି କ'ଣ । ଆବଶ୍ୟକତା ଦୃଷ୍ଟିରୁ

ପୂନଶ୍ଚ ସହରର ସମଗ୍ର ଅଞ୍ଚଳରେ ପୂର୍ବପରି ବସ୍ତି ଜମାଟବାନ୍ଧି ରହିଲା । ଏହି ବସ୍ତି ସଂଖ୍ୟା ଭୁବନେଶ୍ୱର ମହାନଗର ନିଗମ ଘୋଷିତ ଅଞ୍ଚଳରେ ଛୋଟ ବଡ଼ହୋଇ ୫୦୬ ଗୋଟି ବୋଲି ଚିହ୍ନଟ ହୋଇଥିଲା । ଯାହାକି ୨୫ବର୍ଷ ତଳେ ୧୦୩ ଗୋଟି ମାତ୍ର ଥିଲା ।

ସହର ସହର ମଧ୍ୟରେ ଭିନ୍ନ ଭିନ୍ନ ସ୍ୱଭାବର ବସ୍ତି ଦେଖାଯାଇଥାଏ । ଯେଉଁ ସହରଗୁଡ଼ିକ ପୁରୁଣା ଓ ଗାଁର ପ୍ରକୃତି ନେଇ ଜନ୍ମ ସେଠି ସବୁ ବର୍ଗର ସେବାକାରୀମାନେ ବହୁକାଳରୁ ନିଜ ନିଜର ସ୍ଥିତି ଜାହିର୍ କରି ଆସିଛନ୍ତି । ସେମାନେ ରହିଥିବା ଯାଗା ଖଣ୍ଡିକ ସ୍ଥିତିବାନ ସଂପତ୍ତିର ମାନ୍ୟତା ପାଇ ଆସିଛି । କେବଳ ଅଳ୍ପକିଛି ଆବଶ୍ୟକ ସେବାକାରୀ, ଡାକ୍ତରଖାନା ବା ଗୋଟିଏ ସମୟର ପରିତ୍ୟକ୍ତ ଅଞ୍ଚଳରେ ରହି ଆସିଛନ୍ତି । ସହର ମଧ୍ୟରେ ନୂଆ ଓ ପୁରୁଣା ସ୍ୱରୂପ ବାରି ହୋଇଯାଏ । ସବୁ ସହରର ଅବସ୍ଥା ଅନୁଧାନ କଲେ ସ୍ପଷ୍ଟ ଚିତ୍ର ମିଳିଥାଏ । ଏକାମ୍ର କ୍ଷେତ୍ର ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ପୁରୁଣା ଭୁବନେଶ୍ୱର ଭାବେ ପରିଚିତ । ସେଥିରେ କପିଳେଶ୍ୱରପୁର ସାନ୍ତରାପୁର, ସୁନ୍ଦରପଦା, ଝାରପଡ଼ା, ଲକ୍ଷ୍ମୀସାଗର । ଏତଦ୍‌ବ୍ୟତୀତ ଉତ୍ତର ପାର୍ଶ୍ୱରେ ପଟିଆ କଳାରାହାଙ୍ଗ, ମଞ୍ଚେଶ୍ୱର, କଲ୍ୟାଣପୁର ଆଦି, ଦକ୍ଷିଣରେ ଜାଗମରା, ବରମୁଣ୍ଡା ଆଦି ଗ୍ରାମାଞ୍ଚଳର ସ୍ଥିତି ଏବେବି ବାରି ହୋଇଯାଏ । ଅବଶ୍ୟ ସେହିସବୁ ଅଞ୍ଚଳରେ ନୂଆ ନୂଆ ବସତି ସ୍ଥାପନ ହୋଇଛି । ସୁନ୍ଦର ଅଟ୍ଟାଳିକାମାନ ଗଢ଼ି ଉଠିଛି । ଅନେକ ସେବାକାରୀଙ୍କ ଆବଶ୍ୟକତା ବଢ଼ିଛି । ଭୁବନେଶ୍ୱର ଠାରେ ରାଜଧାନୀ ସ୍ଥାପନ ପରର ସମସ୍ତ ୟୁନିଟ୍ ୧-ନମ୍ବର ରୁ ୯-ନମ୍ବର ଏବଂ ସମସ୍ତ ନଗର ଯଥା ବାପୁଜୀ ନଗର, ଅଶୋକ ନଗର, ସତ୍ୟ ନଗର, ଖାରବେଳ ନଗର, ସହୀଦ ନଗର ମଧୁସୂଦନ ନଗର, ସୂର୍ଯ୍ୟ ନଗର, ଗୌତମ ନଗର, ଭୋଇ ନଗର, କଳିଙ୍ଗ ନଗର, ଜଗନ୍ନାଥ ନଗର, ଗଜପତି ନଗର, ସୁରେନ୍ଦ୍ରସାଏ ନଗର ଆଦି ଓ ଅନେକ ବିହାର ଯଥା-ଆଚାର୍ଯ୍ୟ ବିହାର, ଜୟଦେବ ବିହାର, ଶୈଳଶ୍ରୀ ବିହାର, କାନନ ବିହାର ନୂଆ ଭାବେ ଆସିଛି । ଏହି ସବୁ ୟୁନିଟ୍, ନଗର ବା ବିହାର ନୂଆଭାବେ ଆସିଥିବା ହେତୁ ଏଥିରେ ନୂଆ ନୂଆ ବସ୍ତିସବୁ ବହୁ ସଂଖ୍ୟାରେ ଗଢ଼ି ଉଠିବା ସ୍ୱଭାବିକ । ଏ ସବୁର ଯୋଜନା ପାଇଁ ଉନ୍ନୟନ ସଂସ୍ଥା (Bhubaneswar Development Authority) ଗଠିତ ହୋଇଛି । ମାତ୍ର ପୁରୁଣା ସହର ଯଥା କଟକ, ପୁରୀ, ସମ୍ବଲପୁର, ଗଞ୍ଜାମ ଏବଂ ଗଡ଼ଜାତ ରାଜ୍ୟ ମାନଙ୍କରେ ଗଡ଼ ବା ରାଜ ଉଆସ ନିକଟବର୍ତ୍ତୀ ସହର ସବୁର

ଅଧ୍ୟୟନ ତଥା ଉନ୍ନୟନ ପୃଥକ୍‌ଭାବେ ହେବାର ଅଛି । ସେହିପରି ଯେଉଁଠି ନୂଆଭାବେ ଶିଳ୍ପାଞ୍ଚଳ ଓ ବନ୍ଦରମାନ ଗଢ଼ି ଉଠେ ସେଠି ମଧ୍ୟ ପୁରାପୁରି ଏକ ବହୁ ସଂସ୍କୃତି ମଣିଷଙ୍କ ଠୁଳ ହେବା ତଥା ଏକ ଔପନେବେଶୀୟ ବ୍ୟବସ୍ଥା ଜନ୍ମ ନେଇଥାଏ । ଯେପରି ରାଉରକେଲା, ଚୌଦ୍ୱାର, ପାରାଦ୍ୱୀପ, ଗୋପାଳପୁର, ଧାମରା ଆଦି ନବଗଠିତ ସହରମାନ ଦୃଷ୍ଟିକୁ ଆସିଥାଏ । ଏଠି ନିମ୍ନ ଆୟକାରୀମାନଙ୍କର ଶ୍ରମିକ ବସ୍ତି (Labar colony) ଗଢ଼ି ଉଠିଥାଏ ।

ବସ୍ତିବାସିନ୍ଦାଙ୍କର ଥଇଥାନ କରିବା ସେମାନଙ୍କୁ ଏକ ସୁସ୍ଥ ଓ ସ୍ୱାସ୍ଥ୍ୟପ୍ରଦାନକାରୀ ପରିବେଶ ଯୋଗାଇବା ଦିଗରେ ଗତ କିଛିବର୍ଷ ହେବ ଭାରତ ସରକାର ଅନେକ ଯୋଜନା ମାଧ୍ୟମରେ ଅନୁଦାନ ମାନ ଦେଇ ଆସୁ ଅଛନ୍ତି । ଶ୍ରୀମତୀ ଇନ୍ଦିରାଗାନ୍ଧିଙ୍କ ସମୟରୁ ସହର ବା ନଗର ମାନଙ୍କରେ ବସବାସ କରୁଥିବା ମେହେନ୍ତର ମାନଙ୍କ ନିମନ୍ତେ ବାସଗୃହ ଯୋଗାଇବାର ବ୍ୟବସ୍ଥା ଆରମ୍ଭ କଲେ । ପରବର୍ତ୍ତୀ କାଳରେ ନଗରାଞ୍ଚଳରେ ବସ୍ତିବାସିନ୍ଦାଙ୍କ ଉଦ୍ଦେଶ୍ୟରେ ଅନେକ ଗୃହ ଯୋଜନା ସମେତ ଜନକଲ୍ୟାଣକାରୀ ଯୋଜନାମାନ କରାଗଲା । ଓଡ଼ିଶାରେ ମୁଖ୍ୟତଃ ଆମ୍ବେଦକର ଗୃହନିର୍ମାଣ ଯୋଜନା, ରାଜୀବ ସହରାଞ୍ଚଳ ଆବାସ ଯୋଜନା, ବିଜୁ ନଗରାଞ୍ଚଳ ଆବାସ ଯୋଜନାମାନ କରାଯାଇଛି । ପରବର୍ତ୍ତୀ ଅବସ୍ଥାରେ ଅମୃତ ଆଦି ଅନେକ ଯୋଜନାମାନ ସାମନାକୁ ଆସିଛି । ରାଜ୍ୟ ସରକାର ମଧ୍ୟ ଏହି ସହର ବା ନଗରର ବାସିନ୍ଦାମାନଙ୍କ ପାଇଁ ଅତ୍ୟନ୍ତ ଚିନ୍ତିତ ଥିବାର ଦେଖାଯାଉଛି । କିନ୍ତୁ ଏଠି ସବୁ ଚିନ୍ତା ବେଶୀ ପରିମାଣରେ ବିଭିନ୍ନ ଭୋଟ ସମୟରେ, ଭୋଟ ଉଦ୍ଦେଶ୍ୟରେ ପ୍ରକାଶ ପାଇଥାଏ । ଯେଉଁଥିପାଇଁ ବସ୍ତି ବାସିନ୍ଦାଙ୍କ ଦୁର୍ଦ୍ଦଶା ବଢ଼ି ଚାଲିଛି ସିନା କମିବାର ଦେଖା ଯାଉନାହିଁ ।

ବଡ଼ ବିଚିତ୍ର ସ୍ଥିତି ହେଉଛି ସହର ବା ନଗର ମାନଙ୍କର ସ୍ଥିତିରେ ଅନେକ ପ୍ରାର୍ଥକ୍ୟ ଅଛି । କେଉଁ ସହର ପର୍ଯ୍ୟଟନ ପାଇଁ ପ୍ରସିଦ୍ଧ ଓ କେଉଁ ସହର ଶିଳ୍ପ ବା ବନ୍ଦରକୁ ନେଇ ଗଢ଼ି ଉଠିଛି । କେଉଁ ସହର ବ୍ୟବସାୟର କେନ୍ଦ୍ରଭାବେ ତ କେଉଁ ସହର, ରାଜଧାନୀଭାବେ ମୁଣ୍ଡ ଟେକିଛି । ସହର ବା ନଗରମାନଙ୍କର ଆବଶ୍ୟକତାରେ ଭିନ୍ନତା ଅଛି । ସେସବୁ ପ୍ରଥମେ ଅନୁଧ୍ୟାନକରି ଏବଂ ଏଠାରେ ବୃଦ୍ଧି ପାଉଥିବା ଲୋକ ସଂଖ୍ୟା ତଥା ଲୋକ ଆବଶ୍ୟକତା ଗୁଡ଼ିକ ପ୍ରଥମେ ଅନୁଧ୍ୟାନ କରିବା ଓ ପରେ ଯୋଜନା ପ୍ରସ୍ତୁତ କରିବା ଦରକାର । ଏହି ଯୋଜନା ବର୍ତ୍ତମାନର ଆବଶ୍ୟକତା ଦୃଷ୍ଟିରୁ ନୁହେଁ, ଅନ୍ତତଃ ୨୦୫୦ର ଆକଳନ ନେଇ ହେବା ଦରକାର । ଦ୍ୱିତୀୟତଃ ଜମି ସବୁ

ଚିହ୍ନଟ କରିବା ଅର୍ଥାତ୍ କେଉଁ ଜମି ଜଙ୍ଗଲ ଜମି ବା କେଉଁ ଜମି ଦେବୋତ୍ତର ଜମି ଏବଂ କେଉଁ ଜମି ସରକାରୀ ଜମି ରହିଛି ସେ ସବୁର ନିର୍ଣ୍ଣୟ କରି ଗଢ଼ି ଉଠିଥିବା ବସ୍ତିମାନଙ୍କୁ ସଜାଡ଼ିବା, ସ୍ଥାୟୀ କରିବାର ଆବଶ୍ୟକତା ରହିଛି । ପୁରୀ, ଗୋପାଳପୁର ଅବା ପାରାଦ୍ୱୀପ ବେଳାଭୂମି ଅଞ୍ଚଳରେ ମାଛମରା, ନୋଳିଆଙ୍କ ସଂଖ୍ୟା ଅଧିକ । ସେମାନଙ୍କ ବସ୍ତି ନିର୍ମାଣ ସମୁଦ୍ର ତଟରେ ହିଁ ହୋଇଥାଏ । ନିଜର ଡଙ୍ଗା, ଜାଲର ସୁରକ୍ଷା ନିମନ୍ତେ ଆବଶ୍ୟକ ଭିତ୍ତିଭୂମିର ପରିକଳ୍ପନା କରାଯାଇଥାଏ । ସମୁଦ୍ର କୂଳର ପାଖ ଜମି ବସ୍ତିବାସିନ୍ଦାଙ୍କୁ ସ୍ଥାୟୀ ଭାବରେ ଦେବା ହୁଏତ ସମ୍ଭବ ହୋଇ ନପାରେ । କିନ୍ତୁ ସେମାନଙ୍କ ବସ୍ତିର ଆବଶ୍ୟକତା ଥିବାର ବହୁ ସଂଖ୍ୟାରେ ବସ୍ତିସବୁ ଗଢ଼ି ଉଠିଛି । ସ୍ଥାନ-କାଳ-ପାତ୍ର ବିବେଚନା କରି ବସ୍ତିଗୁଡ଼ିକୁ ସଜାଡ଼ିବା ନିହାତି ଜରୁରୀ । ଯେଉଁଥିପାଇଁ ସରକାର ଅର୍ଥବ୍ୟୟ କରି ପ୍ରତ୍ୟେକ ସହରକୁ ନେଇ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଉନ୍ନୟନ ସଂସ୍ଥା ଗଠନ କରିଛନ୍ତି । ଏହି ସଂସ୍ଥାମାନେ ଜମି ଚିହ୍ନଟ, ବସ୍ତି ଚିହ୍ନଟ, ବସ୍ତିବାସିନ୍ଦାଙ୍କ ପରିବାର ଚିହ୍ନଟ କରି ନିର୍ଦ୍ଦିଷ୍ଟ ଯୋଜନା ପ୍ରସ୍ତୁତ କରୁଅଛନ୍ତି କି ? ସେହିସବୁ ଅଞ୍ଚଳରେ ଥିବା ବିଜ୍ଞାପିତ ମ୍ୟୁନିସପାଲଟି ଅବା କରପୋରେସନ୍ ସବୁର କାର୍ଯ୍ୟ ତଥା ଅନ୍ୟାନ୍ୟ ସେବା ରାସ୍ତା - ଜଳ ଯୋଗାଣ -ବିଦ୍ୟୁତ୍ ଯୋଗାଣ - ସବୁଜ ଅଞ୍ଚଳ, ପାର୍କ ଆଦିର ବ୍ୟବସ୍ଥାକୁ ବସ୍ତିବାସିନ୍ଦାଙ୍କ ଉଦ୍ଦେଶ୍ୟରେ ସଂଗଠିତ କରାଯିବାର ପ୍ରକ୍ରିୟାଟି ଅଛି କି ? ସରକାରୀ ରାଜକୋଷରୁ ଅର୍ଥବ୍ୟୟ ହୋଇ ଦୁଇଗୋଟି ବିଜ୍ଞସଂସ୍ଥା ଆଇ.ଆଇ.ଟି. ଖଡ଼ଗପୁର ଓ ଜାଭିୟର୍ସଙ୍କୁ ଭୁବନେଶ୍ୱର ପାଇଁ ଗୋଟିଏ ମାଷ୍ଟରପ୍ଲାନ ପ୍ରସ୍ତୁତ ପ୍ରସ୍ତୁତ ନିମନ୍ତେ ଦାୟିତ୍ୱ ଦିଆଗଲା । । ଗତ ୨୦୦୨ ମସିହାରେ ଏଠି ଯୋଜନା ପ୍ରସ୍ତୁତର ଦାୟିତ୍ୱ ଦିଆଗଲା । ୨୦୦୮ ମସିହାରେ ପୂର୍ଣ୍ଣାଙ୍ଗ ହେଲା । ତେବେ ସେହି ମାଷ୍ଟର ପ୍ଲାନ୍‌ଟିର କୌଣସି ପ୍ରଭାବ ଭୁବନେଶ୍ୱର ନଗରରେ ପଡୁଥିବାର ଆଦୌ ଅନୁଭବ କରି ହେଉନାହିଁ । ତଥାପି ରାଜ୍ୟ ସରକାର ବସ୍ତିବାସିନ୍ଦାଙ୍କ ଥଇଥାନ କରିବା ଓ ସୁସ୍ଥ ପରିବେଶଟିଏ ପ୍ରଦାନ କରିବା ଉଦ୍ଦେଶ୍ୟରେ ଚଳିତ ବର୍ଷ ବିଧାନସଭାରେ ଗୋଟିଏ ଆଇନ ପ୍ରଣୟନ କରିଛନ୍ତି । ଏହି ଆଇନର ତର୍ଜମାଟିଏ ଦରକାର । ବାରାନ୍ତରେ ତାହା ଆଲୋଚିତ ହେବ ।



# ଆସ ଆମେ ବସ୍ତି ସଜାଡ଼ିବା (୩)

ସ୍ୱୀକାର କରିବା ଯେ ପ୍ରତ୍ୟେକ ସହର ବା ନଗରତଳି ଅଞ୍ଚଳ ଓ ମଧ୍ୟବର୍ତ୍ତୀ ଅଞ୍ଚଳରେ ବସ୍ତିମାନ ଗଢ଼ି ଉଠିଥାଏ । ଏହା ମୁଖ୍ୟତଃ ସହର ବା ନଗରର ଯୋଜନା ଠାରୁ ଦୂରରେ ଥିବା ପରିତ୍ୟକ୍ତ ସ୍ଥାନରେ ଗଢ଼ିଉଠେ ଏବଂ ଗୋଟିଏ ସମୟରେ ସହରତଳି ଅଞ୍ଚଳ ବୋଲି ଯାହାକୁ ବିଚାର କରାଯାଇଥାଏ ସହର ବା ନଗରର କ୍ଷିପ୍ର ବୃଦ୍ଧିହେତୁ ମଧ୍ୟବର୍ତ୍ତୀ ଅଞ୍ଚଳର ରୂପ ନେଇଥାଏ । ଏହିସବୁ ବସ୍ତି ସହର ବା ନଗର ଜୀବନର ଏକ ଅଂଶ ହୋଇ ରହିବା ହିଁ ବାସ୍ତବତା । ଏଥିରେ ସେବା ଯୋଗାଉଥିବା ବ୍ୟକ୍ତି ଓ ତା'ର ପରିବାର, ଛୋଟ ଆୟକାରୀ ବୁଲା ବିକାଳୀ, ଛୋଟ ଆୟକାରୀ ନିର୍ମାଣ ତଥା ଅସ୍ଥାୟୀ ଶ୍ରମିକମାନେ ରହିଥାନ୍ତି । ଏମାନଙ୍କର ଜୀବିକା ଅର୍ଜନର ବ୍ୟବସ୍ଥା ସ୍ଥାୟୀ ନୁହେଁ । ଏଣୁ ରହଣୀସ୍ଥଳ ଆଦୌ ସ୍ଥାୟୀ ବୋଲି ଭାବିବା ଠିକ୍ ନୁହେଁ । ଏଠାରେ ରହୁଥିବା ବ୍ୟକ୍ତି ବା ପରିବାରର ଆର୍ଥିକ ସ୍ଥିତି ବଦଳିଲେ ସେ ହୁଏତ ଭଲ ଘରଟିଏ କରି ବା ସରକାରୀ କ୍ୱାଟର ଟିଏ ପାଇ ଅନ୍ୟତ୍ର ଚାଲିଯାଇ ପାରେ । ଏହାକୁ ଆଖି ଆଗରେ ରଖି ବସ୍ତିର ଯୋଜନା ହେବା ଦରକାର ।

ପ୍ରଥମତଃ ବସ୍ତିରେ ରହୁଥିବା ଲୋକଙ୍କର ଆୟ ସୀମିତ । ସେଥିରୁ ବଳାଇ ବା ଋଣ ଆଣିବାର ସମସ୍ୟା ବହନ କରି ସମସ୍ତେ ନିଜ ନିଜର ଘର ତୋଳିବା ଆଦୌ ସମ୍ଭବ ନୁହେଁ । ହୁଏତ କିଛି ଲୋକ ସାମାନ୍ୟ ଅର୍ଥ ଯୋଗାଡ଼ କରି ଗୃହ ନିର୍ମାଣରେ ଅଂଶଗ୍ରହଣ କରିପାରନ୍ତି । ଏଣୁ ଏମାନଙ୍କୁ ଜମି ଯୋଗାଇବା ପରିବର୍ତ୍ତେ ତିଆରି ଘର ଯୋଗାଇବା ଅଧିକ ଶ୍ରେୟସ୍କର । ନିର୍ମିତ ଘର ହୁଏତ ଦୁଇବର୍ଗର ହୋଇପାରେ । ଗୋଟିଏ ବର୍ଗର ଗୃହ ସହଭାଗୀତାରେ (Participatory) ଓ ଆଉ ଗୋଟିଏ ବର୍ଗର ଗୃହ ସରକାର ଓ ନଗର ଉନ୍ନୟନ ତରଫରୁ ତିଆରି କରାଯାଇ ଯୋଗାଇ ଦିଆଯିବ । ଉଭୟ ବର୍ଗର ଗୃହ ପାଇଁ ସ୍ୱଳ୍ପ ହାରରେ ମାସିକ ମରାମତି ଭଡ଼ା (Maintenance Charge) ନିଆଯିବ । କେବଳ ବିଦ୍ୟୁତ୍ ଓ ଜଳ ଦେୟ ପୃଥକ୍ ଭାବେ ପୈଠ ହେବ । ଜମି ଉପରେ ସରକାରଙ୍କର ମାଲିକାନାସତ୍ତ୍ୱ ରହିବ । ମାତ୍ର ଘର ଉପରେ ଦିଆଯାଇଥିବା ବ୍ୟକ୍ତି ଓ ତା' ପରିବାର ଅଧିକାର ରହିବ । ଯାହାକି ଆଇନାନୁସାରେ ସେ କେବଳ ତା'ର ଉତ୍ତରାଧିକାରୀଙ୍କୁ ଦେଇ ପାରିବ । ଭଡାରେ ଲଗାଇବାର ବ୍ୟବସ୍ଥା ରହିବ ନାହିଁ ।

ସମସ୍ତ ଘର ନିର୍ମାଣ ହେବା ସମୟରେ ତା ସହିତ ସରକାରୀ ଖର୍ଚ୍ଚରେ ସୌରଶକ୍ତିର ବ୍ୟବସ୍ଥା ରହିବା ଦରକାର । ଘର ସବୁ ରହୁଥିବା ଜାଗା, ବଡ଼ ବସ୍ତି ଚିହ୍ନଟ କରାଯାଇ ପ୍ରସ୍ତୁତ ହେବ । ପାଖ ଆଖରେ ଖେଳେଇ ହୋଇ ରହିଥିବା ଛୋଟ ଛୋଟ ବସ୍ତି ସେଠାକୁ ସ୍ଥାନାନ୍ତରିତ ହେବା ଦରକାର । ବସ୍ତି ଆଖପାଖରେ ପ୍ରଶସ୍ତ ରାସ୍ତା ଓ ପଛପାଖରେ ପ୍ରଶସ୍ତ ରାସ୍ତା ସହିତ ଦୁଇଧାଡ଼ିର ବଡ଼ ବଡ଼ ଗଛ ଲଗାଗଲେ ବସ୍ତି ପରିବେଶ ସୁରକ୍ଷିତ ରହିପାରିବ । ପ୍ରତ୍ୟେକଙ୍କ ପାଇଁ ନିର୍ମିତ ଗୃହଗୁଡ଼ିକ ୫୦୦ ବର୍ଗଫୁଟ ପରିମିତ ଅଞ୍ଚଳରେ ହେବା ଦରକାର । ତେବେ ଯେହେତୁ ଜମି ନୁହେଁ ବାସଗୃହ ଯୋଗାଇ ଦିଆଯିବାର ବ୍ୟବସ୍ଥା ହେବ ପ୍ରତ୍ୟେକଟି ଘରି ମହଲା ବିଶିଷ୍ଟ ହେବ । (ଜି+୩) । ଅର୍ଥାତ୍ ତଳ ମହଲାଟି ଖୋଲା ରହିବା ସହିତ ଉପର ତିନିମହଲା ଘର ବାସଗୃହ ଉପଯୋଗୀ ହେବ । ଫଳରେ ପ୍ରତ୍ୟେକଟି ପରିବାର ଭୂମି ସଂଲଗ୍ନ ମହଲାଟିରେ ୨୦୦ ବର୍ଗଫୁଟ୍ ପରିମିତ ଖୋଲା ଜାଗାଟିଏ ପାଇପାରିବ । ଯେଉଁଥିରେ ସେ ତା'ର ଟଣାଗାଡ଼ି, ଟ୍ରଲି, ଅଟୋରିକ୍ସା, ପ୍ରସ୍ତୁତି କ୍ଷେତ୍ର ଏପରିକି ଲୁଗାସଫା, ଏପରିକି ଗୋ ମହିଷାଦି ରଖିବାର ବ୍ୟବସ୍ଥା ରହିବ । ଘରର ଆଗ ଓ ପଛ ଭାଗରେ କିଛି ଜାଗା (ପ୍ରାୟ ୧୦୦ବର୍ଗଫୁଟ୍) ମଧ୍ୟ ରହିବ । ଅତଏବ ଗୋଟିଏ ୬୦୦ ବର୍ଗଫୁଟ୍ ନିର୍ମିତ ଘରେ ପ୍ରତ୍ୟେକ ପରିବାର (୩ଟି) ପାଇଁ ନିଆଗଲେ ପରିବାର ପିଛା ୮୦୦ ବର୍ଗଫୁଟ୍ ଜାଗା ମିଳିବା ସତ୍ତ୍ୱେ ସରକାର ପରିବାର ପିଛା ମାତ୍ର ୨୦୦ବର୍ଗଫୁଟ୍ ଯୋଗାଇ ଦେବେ ।

ରାଜ୍ୟ ସରକାର ନୂଆଭାବେ ପ୍ରଣୀତ କରିଥିବା ଆଇନ ଅନୁସାରେ (The Odisha Land Rights to slum Dwellers Act) ଅନୁସାରେ ଗୋଟିଏ ମ୍ୟୁନିସିପାଲଟି ଅଞ୍ଚଳ (Municipal Council Area) ରେ ୪୫ ବର୍ଗ ମିଟର ଓ ଗୋଟିଏ ବିଜ୍ଞପିତ ଅଞ୍ଚଳ (Notified Area Council) ଅଞ୍ଚଳରେ ୬୦ ବର୍ଗ ମିଟର ଜମି ଯୋଗାଇ ଦେବାର ବ୍ୟବସ୍ଥା କରିଛନ୍ତି । କଟକ, ଭୁବନେଶ୍ୱର, ସମ୍ବଲପୁର, ରାଉରକେଲା ଆଦି ବଡ଼ ସହର (Corporation) ଏଥିରେ ନାହିଁ । ସରକାର କମ୍ ଜମିରେ ଅନେକଙ୍କୁ ରଖିବାର ବ୍ୟବସ୍ଥା କରି ସହରର ମୂଲ୍ୟବାନ ଜମି ଅନେକ ବଞ୍ଚାଇ ପାରିବେ । ଅପରପକ୍ଷରେ ଆଜି ଯାହା ବିଜ୍ଞପିତ ଅଞ୍ଚଳ ଅଛି କାଲି ତାହା ମ୍ୟୁନିସିପାଲିଟିରେ ପରିଣତ ହେବ ଏବଂ ଆଜିର ମୁନିସିପାଲିଟି ଖୁବ୍ ଶୀଘ୍ର ବଡ଼ ସହର (Corporation)ରେ ପରିଣତ ହେବାର ସମ୍ଭାବନାକୁ ଏଡ଼ାଯାଇ ନପାରେ । ପ୍ରତ୍ୟେକ ବସ୍ତିବାସିନ୍ଦା ଗୋଟିଏ

ଭଲ ବାସଗୃହ ପାଇପାରିବେ । ଯେଉଁଥିରେ ଦୁଇଗୋଟି ବଡ଼ କୋଠରୀ, ଗୋଟିଏ ପିଲାଙ୍କ ପଢ଼ାପାଇଁ ଛୋଟ ଘର ଏବଂ ରୋଷେଇ ଘର, ପାଇଖାନା ସମେତ ଭଲ ବାରଣ୍ଡାଟିଏ ପାଇପାରିବେ । ନିଜର ଜୀବିକା ଉପାର୍ଜନର ସହାୟତା ଦେବାଭଳି ଗୋଟିଏ ଖୋଲା ପ୍ରଶସ୍ତ ଜାଗା ପାଇପାରିବେ । ଅନେକ ସରକାରୀ ଯୋଜନାରେ ଯୋଗାଇ ଦିଆଯାଉଥିବା ଗୃହସବୁ ଗୋଟିଏ ପରିବାରର ସଭ୍ୟଭାବେ ଚଳୁଥିବାକୁ ଲକ୍ଷ୍ୟ କରି ହୋଇନାହିଁ ଏବଂ ଉଚ୍ଚମହଲା (୪ ତାଲାରୁ ଅଧିକ) ହୋଇଥିବାରୁ କର୍ମଜୀବୀ ଓ ତା'ର ବୃଦ୍ଧ ପିତାମାତା ସିଡ଼ିରେ ଯାତାୟାତ କରିବାର ସମସ୍ୟା ରହିଛି ।

ଏପରି ବାସଗୃହ ପରିବାର ପିଛା ଯୋଗାଇଦେଲେ ଯେଉଁ ସମୟରେ ପରିବାରଟି ଅନ୍ୟ କୌଣସି କର୍ମକ୍ଷେତ୍ରକୁ ଗଲେ ତାହା ସହଜରେ ଖାଲି ହୋଇଯିବ ଓ ସେହିବର୍ଗର କର୍ମଜୀବୀକୁ ଯୋଗାଇ ଦିଆଯାଇ ପାରିବ । ମୋଟ ଗୃହ ନିର୍ମାଣରେ ବ୍ୟୟର ଏକ ଅଂଶସ୍ୱରୂପ ଛୋଟ ଛୋଟ ବସ୍ତି ଜରିଆରେ ନିଆଗଲେ ସ୍ୱଳ୍ପ ଆୟକାରୀକୁ ଏହା ବାଧିବ ନାହିଁ । ଏବଂ ସରକାରଙ୍କର ବ୍ୟୟ ମଧ୍ୟ ବିଭିନ୍ନ ଯୋଜନାରେ କରାଯାଉଥିବା ବ୍ୟୟ ସମେତ କିଛି ଋଣ ମିଶାଇ କରାଗଲେ ବାର୍ଷିକ ବଜେଟ୍ ଉପରେ ଅତ୍ୟଧିକ ଚାପ ପଡ଼ିବ ନାହିଁ । ପ୍ରତ୍ୟେକ ସହର ବା ନଗରରେ ଅନେକ ଜମି ସରକାର ଅନ୍ୟାନ୍ୟ କାର୍ଯ୍ୟପାଇଁ ବଞ୍ଚାଇ ରଖିପାରିବେ । କୌଣସି ବ୍ୟକ୍ତି ଅନାବଶ୍ୟକ ଭାବେ ବସ୍ତି ଭିତରେ ରହିବା ତାହା ଆଉ ସମ୍ଭବ ହେବନାହିଁ । ଅପରପକ୍ଷରେ ସେହିବ୍ୟକ୍ତି ଭୂମିହୀନ ବୋଲି ପ୍ରମାଣପତ୍ର ଯୋଗାଡ଼ର ହଇରାଣରୁ ମୁକ୍ତି ମିଳିବ । ବସ୍ତିବାସିନ୍ଦାଙ୍କର ବାରମ୍ବାର ସ୍ଥାନାନ୍ତର ଭୟରୁ ସବୁଦିନ ପାଇଁ ମୁକ୍ତି ମିଳିବ । ବସ୍ତିରେ ରହୁଥିବା ବ୍ୟକ୍ତି ଓ ତାରି ପରିବାରକୁ ଜମି ଅଧିକାର ପ୍ରମାଣପତ୍ର (Land Rights) ଯୋଗାଡ଼ କରିବାକୁ ପଡ଼ିବ ନାହିଁ । ତା' ବଦଳରେ ଗୃହ ଅଧିକାର (House Occupation) ପ୍ରମାଣପତ୍ର ସର୍ତ୍ତାବଳୀ ସହ ମିଳିବ । ଯେଉଁ ସର୍ତ୍ତରେ ଗୃହ ହସ୍ତାନ୍ତର କରିବା ଅବା ଭଡ଼ାରେ ନେବା ଅବା, ଘରର ପରିବର୍ତ୍ତନ କରିବା ହେବ ନାହିଁ । ଯାହାକି ପ୍ରଚଳିତ ଆଇନ୍ (Chapter - II)ରେ ପ୍ରଦତ୍ତ ହୋଇଛି । ସେସବୁ ଅତି ସରଳଭାବେ କାର୍ଯ୍ୟକାରୀ ହୋଇପାରିବ । ସହର ବା ନଗର ଯେଉଁ ବର୍ଗର ହୁଅନ୍ତୁ ନା କାହିଁକି ସବୁ ବର୍ଗର ବସ୍ତିବାସିନ୍ଦାଙ୍କ ପାଇଁ ସମାନ ସୁବିଧା ସୁଯୋଗ ସୃଷ୍ଟିହେବା ଦରକାର ।

✿✿✿

# ଆସ ଆମେ ବସ୍ତି ସଜାଡ଼ିବା (୪)

ପ୍ରତ୍ୟେକ ନଗର ବା ସହରର ବସ୍ତିବାସିନ୍ଦାଙ୍କ ସମସ୍ୟା ସମାନ ନୁହେଁ । ଗୋଟିଏ ସହରରେ ଥିବା ବାସିନ୍ଦାମାନେ ମଧ୍ୟ ବର୍ଗ ଦୃଷ୍ଟିରୁ ଭିନ୍ନ । କେତେକ ସହରର ଅନତି ଦୂରରେ ଗାଈଗୋରୁ ରହିଥାନ୍ତି । ସହର ମଧ୍ୟବର୍ତ୍ତୀ ଅଞ୍ଚଳରେ ନଥାନ୍ତି । ଅନ୍ୟକେତେକ ସହରର ମଧ୍ୟବର୍ତ୍ତୀ ଅଞ୍ଚଳରେ କିଛି ବ୍ୟକ୍ତି ଗାଈଗୋରୁ ରଖିଥିବାରୁ ସହର ମଧ୍ୟରେ ଅନେକ ସମସ୍ୟା ଉପୁଜୁଥିବା ନାଗରିକ ମାନଙ୍କର ଅଭିଯୋଗ ହୋଇଥାଏ । ରାସ୍ତାରେ ଗୋରୁ ବୁଲିବା, ଷଣ୍ଢ ବୁଲିବା ଫଳରେ ଟ୍ରାଫିକ୍ ସମସ୍ୟା ବୃଦ୍ଧି ପାଉଥିବା ସମସ୍ତେ ଜାଣନ୍ତି । ସେହିପରି ପୁରୁଣା ସହର ଓ ନୂଆ ସହରର ସମସ୍ୟା ମଧ୍ୟ ଭିନ୍ନ । କେତେକ ସହର ପାର୍ଶ୍ୱରେ ନଦୀ ପ୍ରବାହିତ ହେଉଥିବାରୁ ପ୍ରଥା ଅନୁସାରେ ଅନେକ କର୍ମ କର୍ମାଣୀ ନଦୀକୂଳରେ ବା ସାଂସ୍କୃତିକ ପରମ୍ପରା ଅନୁସାରେ ବିଭିନ୍ନ କାର୍ଯ୍ୟକ୍ରମ ନଦୀରେ ହୋଇଥାଏ । ଅନ୍ୟ କେତେକ ସହର ମଧ୍ୟରେ ଥିବା ସାଗର ଏବଂ ବଡ଼ ପୋଖରୀରେ ଏହି ସବୁ କାର୍ଯ୍ୟ ହୋଇଥାଏ । ସମସ୍ୟା ସବୁ ଦେଖି ବସ୍ତିଗୁଡ଼ିକ ନଦୀ, ନାଳ ବା ନଗର ମଧ୍ୟରେ ଥିବା ଯୋର କୂଳରେ ସଜାଇ ରଖିବାର ଆବଶ୍ୟକତା ରହିଛି । ଏହି ଦୃଷ୍ଟିରୁ ପ୍ରତ୍ୟେକ ନଗର ପାଇଁ ପୃଥକ ପୃଥକ ଯୋଜନା ପ୍ରସ୍ତୁତ ହେବା ଦରକାର ।

ରାଜ୍ୟ ସରକାର କରିଥିବା ଆଇନ୍ (The Odisha land right to slum Dwellers Act-2017) ରେ ଦୁଇଶ୍ରେଣୀର ସହର ସଂପର୍କରେ ସୂଚନା ରହିଛି । ସେହି ଦୁଇ ଶ୍ରେଣୀର ସହର ହେଲା ମ୍ୟୁନିସିପାଲିଟି ( Municipal Council) ଏବଂ ବିଜ୍ଞପିତ ଅଞ୍ଚଳ (Notified Area Council) ଗତ କିଛି ବର୍ଷତଳେ ପ୍ରଣିତ ହୋଇଥିବା ଭୁବନେଶ୍ୱର, କଟକ, ସମ୍ବଲପୁର, ବ୍ରହ୍ମପୁର ଆଦି କର୍ପୋରେସନ୍ ସଂପର୍କରେ ସୂଚନା ନାହିଁ । ଏହିସବୁ କର୍ପୋରେସନ୍‌ରେ ବସ୍ତି ସଂଖ୍ୟା ଓ ବସ୍ତିବାସିନ୍ଦାଙ୍କ ସଂଖ୍ୟା ଖୁବ୍ ଅଧିକ । ସମସ୍ୟା ମଧ୍ୟ ଅତି ପୁରୁଣା ଓ ଜଟିଳ ।

ଗୋଟିଏ ମତ ହେଉଛି ସମଗ୍ର ରାଜ୍ୟରେ ସବୁବର୍ଗର ପୌରାଞ୍ଚଳରେ ଥିବା ବସ୍ତିବାସିନ୍ଦାଙ୍କ ପାଇଁ ଗୋଟିଏ ବ୍ୟବସ୍ଥା (Slum Dwellers Development Authority) ପ୍ରସ୍ତୁତ କରି ଯୋଜନା ଓ କାର୍ଯ୍ୟନିର୍ବାହ ପ୍ରକ୍ରିୟାକୁ ତ୍ୱରାନ୍ୱିତ ତଥା ଉତ୍ତରଦାୟୀ କରାଯିବା ଦରକାର । ନୂଆ ଆଇନ୍‌ରେ "Slum Redevelopment

and Rehabilitation Committee or any Authorised officer" ସଂପର୍କରେ କୁହାଯାଇଛି । ଏହି ବ୍ୟବସ୍ଥା ସ୍ୱୟଂ ସଂପୂର୍ଣ୍ଣ ନୁହେଁ ଅବା କାର୍ଯ୍ୟନିର୍ବାହ କରିବାର ସୁଦୃଢ଼ ବ୍ୟବସ୍ଥାର ଅଧିକାରୀ ନୁହଁନ୍ତି ।

ପ୍ରତ୍ୟେକ ପୌରାଞ୍ଚଳର ସ୍ୱତନ୍ତ୍ର ବସ୍ତି ଯୋଜନା ଓ ବସ୍ତି ପରିଚାଳନା ରହିବା ଏବଂ ସେଗୁଡ଼ିକର ପରିଚାଳନା ନିମନ୍ତେ ସ୍ୱତନ୍ତ୍ର ବିଭାଗ (SDDA) ଦ୍ୱାରା ହେବା ଆବଶ୍ୟକ । ବସ୍ତି ବାସିନ୍ଦାମାନେ ଯେଉଁସବୁ ସୁବିଧା ସୁଯୋଗ (basic Urban Services) ଗୁଡ଼ିକ ଆବଶ୍ୟକ କରନ୍ତି ବସ୍ତି ଉନ୍ନୟନ ସଂସ୍ଥା (SDDA) ସଂପୃକ୍ତ ପୌରାଞ୍ଚଳ ଅଧିକାରୀଙ୍କ ସହ ଯୋଗାଯୋଗ କରି କାର୍ଯ୍ୟକାରୀ କରିବେ ହେଲେ ପରିଚାଳନା ଦାୟିତ୍ୱ ସେମାନଙ୍କ ହାତରେ ସ୍ୱତନ୍ତ୍ର ଭାବେ ରହିବା ଦରକାର । ପ୍ରତିବର୍ଷ ବସ୍ତି ଅଞ୍ଚଳରୁ ଆସୁଥିବା ରାଜସ୍ୱ ସେହି ଅଞ୍ଚଳର କାର୍ଯ୍ୟନିର୍ବାହୀ ସଂସ୍ଥା ପାଖରେ ରହିବ ଓ ସରକାରୀ ଅନୁଦାନ ସ୍ୱତନ୍ତ୍ରଭାବେ ଯାଇ ଆବଶ୍ୟକ ମୁତାବକ ଖର୍ଚ୍ଚ କରାଗଲେ ବସ୍ତି ବାସିନ୍ଦାମାନେ ନିଜ ନିଜର ଅଭାବ ଅଧିକ ଜଟିଳ ହେବା ପୂର୍ବରୁ ସମସ୍ୟାର ସହଜସାଧ ସମାଧାନ ହୋଇ ପାରିବ । ଏପରିକି ବସ୍ତି ଭିତରର ଛୋଟବଡ଼ ସମସ୍ୟା ସମାଧାନ ସହିତ ବିଶୃଙ୍ଖଳା ଆପୋଷ ଆଲୋଚନାରେ ସମାଧାନ ଏହି ଅଥରିଟି ମାଧ୍ୟମରେ ହେବା ଆବଶ୍ୟକ ।

କିଛି ଯୋଜନାକାରୀଙ୍କ ମତରେ ସହର ମଧ୍ୟରେ 'ଗାଈ' ରଖି ବ୍ୟବସାୟ କରିବା ପସନ୍ଦ ଯୋଗ୍ୟ କଥା ନୁହେଁ । ଏହି ବ୍ୟବସ୍ଥାଟିକୁ ସଂପୂର୍ଣ୍ଣ ଭାବେ ଉଚ୍ଛେଦ କରିବା ସବୁଠାରେ ସମ୍ଭବ ନୁହେଁ । ଏ ସଂପର୍କରେ ଗାଈ ଉଚ୍ଛେଦ କଥା ଅନେକ ବର୍ଷଧରି କୁହାଯାଇ ଆସୁଛି । ତାହା କ'ଣ ସମ୍ଭବ ହୋଇଛି କି ? ବରଂ ରାସ୍ତାରେ ବୁଲୁଥିବା ଗୋରୁଙ୍କ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । ସମସ୍ତ ନଦୀକୂଳରେ ଥିବା ବସ୍ତିମାନଙ୍କରେ ଗୁହାଳ ତଳ ମହଲାରେ ଓ ବାସିନ୍ଦାକୁ ଉପର ମହଲାରେ ରଖାଯିବାର ବ୍ୟବସ୍ଥା ତଥା ସେଥିରୁ ନିର୍ଗତ ଆବର୍ଜନାକୁ ଗୋଟିଏ ସ୍ୱତନ୍ତ୍ର ବ୍ୟବସ୍ଥାରେ ନିୟନ୍ତ୍ରଣ କରିବା ତଥା ନିଷ୍କାସନ କରିବାର ବ୍ୟବସ୍ଥା ବରଂ ଅଧିକ ସଫଳତା ଦେବ ବୋଲି ମନେ ହୁଏ । ବରଂ ରାସ୍ତାକୁ ଆସୁଥିବା ଗାଈଗୋରୁକୁ କାଞ୍ଜିଆ ହୁଦାକୁ ଆଣି ଅବା ଦୂର ଜାଗାରେ ଗୋଶାଳା କରି ରଖିବା ଏବଂ ଏଥିପାଇଁ ମାଲିକ ଚିହ୍ନଟ ହେଲେ ଜୋରିମାନା ମୋଟା ଅଙ୍କର ବସାଇବା ଦରକାର ଅବା ବାରମ୍ବାର ବ୍ୟତିକ୍ରମ କରୁଥିବା ମାଲିକକୁ ବସ୍ତିରୁ ବାହାରିଯିବା ପାଇଁ ଆଇନଗତ କ୍ଷମତା ରହିବା ଦରକାର ।

ବସ୍ତି ମଧ୍ୟରେ କମ୍ୟୁନିଟି ହଲ୍, ପ୍ରାଥମିକ ଶିକ୍ଷାନୁଷ୍ଠାନ ଆଦି ସହିତ ଅତ୍ୟାବଶ୍ୟକ ଜିନିଷର ସବୁ ସୁଲଭ ମୂଲ୍ୟରେ ବିକ୍ରୟ ବ୍ୟବସ୍ଥା ରହିବା ଦରକାର । ସେଥିପାଇଁ ଦୋକାନ ଗୃହ ତଥା ଦୋକାନୀ ନିଯୁକ୍ତ ହେବା ଦରକାର । ଏତଦ୍‌ବ୍ୟତୀତ ବସ୍ତିମାନଙ୍କରେ "ସଚେତନତା ସୃଷ୍ଟି ନିମନ୍ତେ ବିଭିନ୍ନ ସ୍ୱେଚ୍ଛାସେବୀ ସଂଗଠନ ସହାୟତା ନିଆଯାଇପାରେ ।

ବସ୍ତିଗୁଡ଼ିକ ସଂପୂର୍ଣ୍ଣଭାବେ ନିଶାମୁକ୍ତ ଅଞ୍ଚଳକରି ରଖିବାର ଆଇନର ବ୍ୟବସ୍ଥା ରହିବା ଦରକାର । ଯେଉଁମାନେ ଏହି ଆଇନର ଖିଲାପ କରିବାର ଅଭିଯୋଗ ହେବ ତୁରନ୍ତ ସେମାନଙ୍କୁ ସେ ବସ୍ତିରୁ ଉଚ୍ଛେଦ ଆଦେଶ ହେବାର ବ୍ୟବସ୍ଥା ରହିବା ଉଚିତ୍ । ବସ୍ତିମାନଙ୍କରେ ଥିବା ଲୋକମାନେ ସ୍ୱଚ୍ଛ ଆୟକାରୀ ହୋଇଥିବା ଦୃଷ୍ଟିରୁ ବଡ଼ ବଡ଼ ଧାଡ଼ି ଘର ରାତ୍ରି ରହଣିସ୍ଥଳ ଭାବେ ପ୍ରସ୍ତୁତ ହୋଇ ରହିବା ଆବଶ୍ୟକତା ଅଛି । ଦିନିକିଆ ଅବା ମାସିକିଆ ସୂତ୍ରରେ ଜଣେ ରହିବାର ବ୍ୟବସ୍ଥା ମଧ୍ୟ ଏଠାରେ ହୋଇପାରେ । ସେଥିପାଇଁ ଗୋଟିଏ ସହଣୀୟ ଭଡା ଆଦାୟ କରାଯାଇପାରେ । ବସ୍ତିମାନଙ୍କରେ ଚତୁଃପାର୍ଶ୍ୱରେ ଗୋଟିଏ ସୁନ୍ଦର ସବୁଜ ବଳୟ ରହିବା ଅନେକ ଦୃଷ୍ଟିରୁ ବାଞ୍ଛନୀୟ । ଏ ସମସ୍ତ ଲକ୍ଷ୍ୟ ରଖି ବସ୍ତି ପ୍ରସ୍ତୁତ ହେଲେ ଦୃଢ଼ତାର ସହିତ କୁହାଯାଇପାରେ ଯେ ବସ୍ତି ଶୃଙ୍ଖଳିତ ହେବା ସଂଗେ ସଂଗେ ସରକାର ନିଜହାତକୁ ଅନ୍ତତଃ ସଂପ୍ରତି ବସ୍ତିବାସିନ୍ଦା ବ୍ୟବହାର କରୁଥିବା ଜମିର ଏକ ମୁଖ୍ୟ ଅଂଶ ଫେରି ଆସିବ । ଯାହା ଫଳରେ ସରକାର ଅନେକ ଲାଭବାନ ହେବେ । ବସ୍ତିକୁ ସୁନ୍ଦରଭାବେ ସଜାଡ଼ି ରଖିବା କର୍ତ୍ତୃପକ୍ଷରେ ଦାୟିତ୍ୱ ଓ ବସ୍ତିବାସିନ୍ଦାମାନେ ଏଥିରେ ସହଯୋଗ ଦେବା ସେହି ପରିମାଣରେ ଜରୁରୀ ।



# ଆସ ଆମେ ବସ୍ତି ସଜାଡ଼ିବା (୫)

ଏକ ସମୟରେ ଓଡ଼ିଶା ସଂପୂର୍ଣ୍ଣ ଗ୍ରାମଭିତ୍ତିକ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ କେନ୍ଦ୍ରଭାବେ ପରିଚିତ ଥିଲା । ଗାଁରେ ବା ଗ୍ରାମୀଣ ହାଟରେ ସବୁକିଛି ଆବଶ୍ୟକତା ମେଣ୍ଟୁଥିଲା । ଗାଁ ବଇଦ ଗାଁରେ ଚିକିତ୍ସକ ଥିଲେ । ସବୁ ଶ୍ରେଣୀର ସେବା ବ୍ୟବସ୍ଥା ଗାଁରେ ସଜା ହୋଇଥିଲା । ଗାଁଟି ସ୍ୱୟଂସମ୍ପୂର୍ଣ୍ଣ ଓ ସ୍ୱାବଲମ୍ବନଶୀଳ ଥିଲା । ବେପାରବାଣିଜ୍ୟ ଗାଁ କୁ ଗାଁ ବୁଲି ବେପାରୀଦଳ କରୁଥିଲେ । କେବଳ ଯାହା ବିପଣୀ ଲାଗୁଥିଲା ବେପାରୀ ବଣିକ ଯାତାୟତ କରୁଥିବା ସମୁଦ୍ର ତଟ ବା ନଦୀତଟ ବନ୍ଦର ମାନଙ୍କରେ ଏବଂ ତୀର୍ଥଯାତ୍ରୀମାନଙ୍କପାଇଁ ତୀର୍ଥସ୍ଥଳୀ ମାନଙ୍କରେ । ଗଡ଼ ବା ରାଜ ଦରବାର ଯାହା କୁହାଯାଉଥିଲା ତା'ରି ଆଖପାଖରେ କିଛିଲୋକ ରାଜ୍ୟ କାର୍ଯ୍ୟପାଇଁ ଠୁଳ ହେଉଥିଲେ । ସେମାନଙ୍କ ସହିତ କିଛି ସେବାକାରୀ ବା ଦୋକାନ ବଜାରର ଆବଶ୍ୟକତା ଥିଲା । ତଥାପି ତାହାସବୁ ଗୋଟିଏ ବଡ଼ ବା ଉନ୍ନତ ଧରଣର ଗାଁ ବୋଲି ଧରିବାକୁ ହେଉଥିଲା । ଇଂରେଜ ଶାସନକାଳରୁ ସହର ଭିତ୍ତିକ ଅର୍ଥନୀତି, ସାମାଜିକ ବ୍ୟବସ୍ଥା ଯୋର ହେଲା । ସହର ଗଢ଼ି ଉଠିଲା । କୋର୍ଟ କଚେରୀ ଚାଲିଲା । ଲୋକେ ସହରାଭିମୁଖୀ ହେଲେ । ଗ୍ରାମୀଣ ଅର୍ଥନୀତି ବିପର୍ଯ୍ୟୟର ସମ୍ମୁଖୀନ ହେଲା । ସବୁକିଛି ସହର ବଜାରରେ ବିଦେଶୀମାନେ କମ୍ପାନୀ ଆଣି ଠୁଳ କଲେ । ଇଂରେଜ ଗଲେ । କିନ୍ତୁ ସହର ସଂଖ୍ୟା ବୃଦ୍ଧି ପାଇଲା । ସବୁକିଛି ସହର କୈନ୍ଦ୍ରିକ ହେଲା । ଅବା ଯେଉଁଠି ରାଜଧାନୀ କୋର୍ଟ କଚେରୀ ରହିଲା ଲୋକସଂଖ୍ୟା ସେଠାରେ ବଢ଼ି ଚାଲିଲା । ବଡ଼ ବଡ଼ ଶିଳ୍ପ ପ୍ରତିଷ୍ଠା ହୋଇ ଅନେକ ପ୍ରକାର କର୍ମଜୀବୀ ଠୁଳ ହେଲେ । ଶିଳ୍ପ ନଗରୀମାନ ଗଢ଼ି ଉଠିଲା । କର୍ମସଂସ୍ଥାନ ଅନ୍ୱେଷଣରେ ସାଧାରଣ ବର୍ଗ ଗାଁ ଛାଡ଼ି ନୂଆ ନୂଆ ସହରକୁ ଗଲେ ଏବଂ ସହର ବା ନଗର ଭାବେ ନୂଆ କଳେବର ନେଇ ଆତ୍ମପ୍ରକାଶ କରୁଛି । ବିଜ୍ଞାପିତ ଅଞ୍ଚଳ (Notified Area) ଘୋଷିତ ହେଉଛି । ଏହାପରେ ଉତ୍ତିର୍ଣ୍ଣ ହୋଇ ପୌରାଞ୍ଚଳ (Municipality) ରେ ପରିଣତ ହେଉଛି । ସେ ସବୁ ନଗର (City)ର ମାନ୍ୟତା ନେଉଛି ଏବଂ କେତେକ କର୍ପୋରେସନ୍ ଭାବେ ସରକାର ସ୍ୱୀକୃତି ଲାଭ କରୁଛି । ଅନେକ ବଡ଼ ବଡ଼ ଗାଁ ସହର ସାଦୃଶ ହୋଇ ସ୍କୁଲ, କଲେଜ, ଛୋଟ କାରଖାନା ବା ଶିଳ୍ପପୁଞ୍ଜ ଧାରଣ କରି ପୌରାଞ୍ଚଳ ଘୋଷଣା ଅପେକ୍ଷାରେ

ଅଛନ୍ତି । ମୋଟାମୋଟି ଭାବେ ସହର ସଂଖ୍ୟା ବୃଦ୍ଧି ଓ ସହରାଞ୍ଚଳରେ ଜନସଂଖ୍ୟା ବୃଦ୍ଧି "ବସ୍ତି ସମସ୍ୟା" ବୃଦ୍ଧି ଘଟାଇବା ସ୍ୱଭାବିକ ।

ରାଜ୍ୟରେ ଥିବା ସମସ୍ତ କର୍ପୋରେସନ୍, ମ୍ୟୁନିସିପାଲିଟି ବିଜ୍ଞାପିତ ଅଞ୍ଚଳର ବସ୍ତି ଗୁଡ଼ିକରେ ନିର୍ଣ୍ଣୟ ଓ ବସ୍ତିବାସିନ୍ଦାଙ୍କର ତାଲିକା ତଥା ପରିବାର ପରିଚୟ ବ୍ୟବସାୟ ବା ସେବା ସହ ଗୋଟିଏ ତାଲିକା (Digital Record) ପ୍ରସ୍ତୁତ ହେବା ଦରକାର । ଯଦିଓ ଏପରି ଏକ ତାଲିକା କେତେକ ସହରାଞ୍ଚଳ ପ୍ରସ୍ତୁତ ହୋଇସାରିଛି । କିନ୍ତୁ ପୂର୍ଣ୍ଣଭାବେ ସିଦ୍ଧାନ୍ତମୂଳକ ପରିଚୟପତ୍ର ପ୍ରସ୍ତୁତି ହୋଇ ପାରିନାହିଁ । ପୌରାଞ୍ଚଳରେ ବିକ୍ଷିପ୍ତ ହୋଇ ଗଢ଼ି ଉଠିଥିବା ଛୋଟ ଛୋଟ ବସ୍ତିକୁ ପ୍ରତ୍ୟେକ ୟୁନିଟ୍, ୱାର୍ଡ଼, କାଉନ୍ସିଲ୍ ବା କର୍ପୋରେଟ୍ ଅଞ୍ଚଳ ମଧ୍ୟରୁ ସ୍ଥାନାନ୍ତରିତ ହେବା ଦରକାର । ସମସ୍ତ ପୁନର୍ଗଠିତ ବସ୍ତି ଭିତରେ ଏକ ପ୍ରକାର ସେବା ଯଥା - ପିଇବା ପାଣି, ଆଲୋକ, ଶିକ୍ଷା ଓ ପ୍ରାଥମିକ ସ୍ୱାସ୍ଥ୍ୟ ବ୍ୟବସ୍ଥାରହିବା ଦରକାର । ସବୁ ବଡ଼ବସ୍ତି ଘେରିପାଖେ ପ୍ରାଚିର ନିର୍ମିତ ହୋଇ ଥିଲେ ତା ମଧ୍ୟରେ ଥିବା ସବୁଜବଳୟ ନଷ୍ଟ ହେବାର ଆଶଂକା ରହିବ ନାହିଁ ଏବଂ ଭବିଷ୍ୟତରେ ବସ୍ତି ଅଞ୍ଚଳ ସଂପ୍ରସାରିତ ହେବନାହିଁ । ବସ୍ତିବାସିନ୍ଦାଙ୍କ ନିମନ୍ତେ ପରିଷ୍କାର ପରିଚ୍ଛନ୍ନତା ପରିବେଶ ଉପରେ ଅଧିକ ଗୁରୁତ୍ୱ ରହିବ । ବସ୍ତି ବାସିନ୍ଦାଙ୍କର ଏକାଧିକ ଜାଗା ବା ବାସଗୃହ ସେହି ସହର ବା ରାଜ୍ୟ ଭିତରର ଅନ୍ୟ କୌଣସି ପୌରାଞ୍ଚଳରେ ଏକ ସମୟରେ ଯେପରି ନ ରୁହେ ସେଥିପ୍ରତି ଦୃଷ୍ଟି ରହିଲେ ଅନେକ ଭାବେ କର୍ତ୍ତୃପକ୍ଷ ଉପକୃତ ହେବେ ।

ଏକଥା ସ୍ୱୀକାର କରିବାକୁ ହେବ ଯେ ବିଭିନ୍ନ ଆତ୍ମ ନିଯୁକ୍ତି ବା ନିଯୁକ୍ତି ଅନ୍ୱେଷଣରେ ପୌରାଞ୍ଚଳରେ ଭିଡ଼ ଜମିଥାଏ । ଏଣୁ ତାଲିକା ଓ ବସ୍ତି ଅଞ୍ଚଳ ପ୍ରସ୍ତୁତିବେଳେ ଯେପରି ଏଥିରେ ଅଯଥା ତ୍ରୁଟି ନରହେ ସେଥିପ୍ରତି ଧ୍ୟାନ ଦେବା ଦରକାର । ସହର ନୂଆ ନୂଆ ଅଞ୍ଚଳକୁ ବିସ୍ତାରିତ ହେଲେ ସେହିସବୁ ଅଞ୍ଚଳରେ ହୁଏତ ନୂଆ ବସ୍ତି ବା ଥଇଥାନର ବ୍ୟବସ୍ଥା ରହିପାରେ ବହୁଶଯ୍ୟା ବିଶିଷ୍ଟ ବାସ ଉପଯୋଗୀ ଗୃହ (Dormitory) ମାନଙ୍କରେ ଏମାନଙ୍କୁ ଅସ୍ଥାୟୀ ଭାବେ ରଖାଯିବା ସହିତ ସେମାନଙ୍କର ମୂଳ ଆଧାରକାର୍ଡ଼ ଭିତ୍ତିରେ ଗୋଟିଏ ପରିଚୟ ପତ୍ର (Temporary I. Card) ଦେଲେ ଅନେକ ଆଶଙ୍କାରୁ କର୍ତ୍ତୃପକ୍ଷ ରକ୍ଷା ପାଇବେ ଓ ଶୃଙ୍ଖଳା ରହିବ ।

ପର୍ଯ୍ୟାୟକ୍ରମେ ବାସଗୃହ ପ୍ରସ୍ତୁତ କରି ବାସିନ୍ଦାଙ୍କୁ ସ୍ଥାନାନ୍ତରିତ କରିବା ହେଲେ କିଛି ପ୍ରତିବନ୍ଧକ ରହିବ ନାହିଁ । ଗୋଟିଏ ଉଦାହରଣ ନିଆଯାଇପାରେ । ଆଚାର୍ଯ୍ୟବିହାର

ଛକ (ଭୁବନେଶ୍ୱର) ଠାରୁ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରାଚୀର କଡ଼େ କଡ଼େ ଗଢ଼ି ଉଠିଥିବା ବସ୍ତିର ଗୋଟିଏ ଗୋଟିଏ ଅଂଶରେ ଘରପ୍ରସ୍ତୁତ କରି (ତିନିତାଲା ବିଶିଷ୍ଟ ବାସଗୃହ) ସେଠାକୁ ଅନ୍ୟମାନଙ୍କୁ ସ୍ଥାନାନ୍ତରିତ କରିବା ସହିତ ଖାଲି ହେଉଥିବା ଆଶାରେ ପୁନଶ୍ଚ ଗୃହନିର୍ମାଣ ହେବ । ଫଳତଃ କେହି ଏହାର ପ୍ରତିବାଦ କରିବେ ନାହିଁ । ତେବେ ଏହି ବାସଗୃହ ନିର୍ମାଣ ସମୟରେ ଯଥାସମ୍ଭବ ବିଶ୍ୱବିଦ୍ୟାଳୟ ପ୍ରାଚୀରଠାରୁ ଦୂରତ୍ୱ ରଖିବା ଦରକାର । ଫଳତଃ ବିଶ୍ୱବିଦ୍ୟାଳୟ ପରିସର ଭିତରକୁ ଅଯଥା ବ୍ୟବହାର (Encroach) କରିବା ସମ୍ଭବ ହେବନାହିଁ । ଅପରପକ୍ଷରେ ରାସ୍ତାକଡ଼ରେ ଚଲାପଥଟି ଯେପରି ସର୍ବକାଳୀନ ସୁରକ୍ଷିତ ରହେ ସେଥିପ୍ରତି ଦୃଷ୍ଟି ରହିବା ଦରକାର । ବସ୍ତିଘର ଗୁଡ଼ିକରେ ଆବଶ୍ୟକ ପବନ ଯାତାୟାତ ଓ ଆଲୋକିତ ରହିବାର ବ୍ୟବସ୍ଥା ଥାଇ ନିର୍ମିତ ହୋଇଥିଲେ ଅତି ଭଲ ।

ସାମାଜିକ ନ୍ୟାୟ, ମାନବିକ ମୂଲ୍ୟବୋଧ, ଆବଶ୍ୟକତା ଆଦି ଓ ସରକାରଙ୍କର ଦାୟିତ୍ୱ ବା କର୍ତ୍ତବ୍ୟ ସବୁକୁ ଆଖି ଆଗରେ ରଖି ବସ୍ତି ସଜାଡ଼ିବାର ସମୟ ଆସିଛି । ବାବୁମାନଙ୍କର ବସ୍ତି ଉଚ୍ଛେଦ ପାଇଁ ବ୍ୟଗ୍ରତା ଯେଉଁ ପରିମାଣରେ ଗ୍ରହଣଯୋଗ୍ୟ ନୁହେଁ, ସେହି ପରିମାଣରେ ବସ୍ତି ସୁରକ୍ଷା ସଂଗଠନ ମାନଙ୍କର ଆବେଗ ବା ଅତିମାତ୍ରାର ଅଯୌକ୍ତିକ ଦାବୀ ପ୍ରତି ସମର୍ଥନ ମଧ୍ୟ ଅନେକ ସମୟରେ ଗ୍ରହଣୀୟ ମନେ ହୁଏନାହିଁ । ଉଭୟଙ୍କ ଦୂରତ୍ୱ ରଖି ସରକାର ବା କର୍ତ୍ତୃପକ୍ଷ ବସ୍ତି ପୁନଃର୍ଗଠନ ଯୋଜନାମାନ କରିବା ଜରୁରୀ । କିନ୍ତୁ ସେଥିରେ ବାସ୍ତବତା ତଥା ସମବେଦନଶିଳତା ଭରି ରହିବାର ଆବଶ୍ୟକତା ଅଛି ।

ବସ୍ତି ସଜଡ଼ାଗଲେ ପୌରାଞ୍ଚଳର ଅନେକ ସମସ୍ୟା ଦୂରହେବ । ଅନେକ ମୂଲ୍ୟବାନ ଜମି ସରକାରୀ ଖାତାକୁ ଫେରି ଆସିବ । ଉନ୍ନତମାନର ସହରୀ ବ୍ୟବସ୍ଥା ପ୍ରତିଷ୍ଠା ହେବ । ପୌରାଞ୍ଚଳରେ ସେବାଯୋଗାଣ ସହଜ ହେବ । ଏକ ସ୍ୱାସ୍ଥ୍ୟକର ପରିବେଶ ସୃଷ୍ଟି ହେବ । ଯେଉଁଠାରେ ସହରସୀମା ବୃଦ୍ଧି ହେବାର ଯୋଜନା ଅଛି ସେଠାରେ ସରକାରୀଭାବେ ଥିବା ଖୋଲାଜାଗାକୁ ଚିହ୍ନଟକରି ସୁରକ୍ଷିତ କରି ରଖିବା ମଧ୍ୟ ଆବଶ୍ୟକ । ଫଳତଃ ଭବିଷ୍ୟତରେ ସହର ଯୋଜନା ମଧ୍ୟରେ ଗୋଟିଏ ଗୋଟିଏ ଉନ୍ନତ ବସ୍ତି ନିର୍ମାଣରେ ଅସୁବିଧା ଉପୁଜିବ ନାହିଁ । (ସମାପ୍ତ)



# ଭିକାରୀମୁକ୍ତ ସ୍ମାର୍ଟ ସିଟି !

କେନ୍ଦ୍ର ସରକାର ଦେଶରେ ୧୦୦ ଗୋଟି ସ୍ମାର୍ଟ ସିଟି ଘୋଷଣା କଲେ । ସେଥିରେ ଓଡ଼ିଶାର ଭୁବନେଶ୍ୱର ଏକ ନମ୍ବରଭାବେ ସ୍ଥାନିତ ହୋଇଛି ଓ ୨୦୧୬-୧୭ କେନ୍ଦ୍ରୀୟ ବଜେଟରେ ମଧ୍ୟ ବ୍ୟୟ ବରାଦର ବ୍ୟବସ୍ଥା ହୋଇଛି ।

ରାଜ୍ୟବାସୀ ମନେକରନ୍ତି ଖୁବ୍ ଏକ ବଡ଼ ସ୍ୱପ୍ନ ସତେ ଯେପରି ସାକାର ହେଲା । ଯେଉଁଥିପାଇଁ ରାଜ୍ୟସାରା ଏକ ତୃପ୍ତିର ଝଲକ ଦେଖିବାକୁ ମିଳିଥିଲା ।

ସ୍ମାର୍ଟସିଟିର ଅନେକ ଦିଗ ସଂପର୍କରେ ବାଖ୍ୟା ଶୁଣିବାକୁ ମିଳୁଛି । କିନ୍ତୁ ଗୋଟିଏ ସୁସ୍ଥ ବ୍ୟବସ୍ଥାର ମୁଖ୍ୟ ଅନ୍ତରାୟ ଏକ ସାମାଜିକ ବ୍ୟାଧି କଥା କେହି ଆଲୋଚନା କରୁଥିବା ଦେଖା ଯାଉନାହିଁ । ସେହି ବ୍ୟାଧ ହେଉଛି ସହର ତମାମ ବିଛାଡ଼ି ହୋଇ ପଡ଼ିଥିବା ଭିକ୍ଷାବୃତ୍ତି ଓ ଭିକାରୀପଲର ସମାଗମ । ଅତି ଅସହାୟା ମହିଳାଟିଏ, କାଖରେ କୁନି ଛୁଆଟିଏ ଧରି କିଛିକାଳ ପାଇଁ ଅଟକି ରହିଥିବା ଗାଡ଼ି ପାଖରେ ଛିଡ଼ା ହୋଇ ଅତି କାତରଭାବେ କିଛି ମାଗୁଛି । ବାବୁ, ବାବୁଆଣୀଙ୍କ ଦୟା ହେଲେ କିଛି ଦିଅନ୍ତି, ଯାହାଙ୍କ ପାଖରେ ଖୁଚୁରା ନଥାଏ ସେମାନେ ମନସ୍ତାପରେ ନିଜକୁ ଅପରାଧି ଭାବି ଚାଲି ଯାଇଥାନ୍ତି । ଅନେକଙ୍କ କ୍ଷେତ୍ରରେ ଏହାହିଁ ଘଟିଥାଏ । ମନ୍ଦିରପାଖରେ ଦଳେ ଅକର୍ମଣ୍ୟ ଭିକାରୀ ବସିଛନ୍ତି । ଡାକ ପକାଉଛନ୍ତି ହେ ବାବୁ, ହେ ମା' ପଇସା ଦି'ଟା ଦିଅ । ତମର ଧର୍ମ ହେବ । ସଂଖ୍ୟାରେ ଏକ, ଦୁଇ ନୁହଁନ୍ତି ଅନେକ । ମନ୍ଦିରରୁ ପୂଜାସାରି ଫେରୁଥିବା ଧାର୍ମୀକ ତଥା ଆଧାତ୍ମିକ ମାନସିକତା ଏମାନଙ୍କ ପାଖରେ ଅଟକି ଯାଇଥାଏ । ସମସ୍ତଙ୍କ ପାଇଁ ହୁଏତ ପଇସା ନଥାଏ ବା ଦେବାପାଇଁ ତା' ପାଖରେ ସମୟ ଓ ଖୁଚୁରା ପଇସା ନଥାଏ । ଭାରାକ୍ରାନ୍ତ ଉଦାସ ଚିତ୍ତରେ ମୁହଁ ବୁଲାଇ ଫେରି ଯା'ନ୍ତି । ଦେଇ ନ ପାରିବାରୁ ମନରେ ଭିନ୍ନଭାବ ସୃଷ୍ଟିହୁଏ । ରେଳଷ୍ଟେସନ, ବସଷ୍ଟାଣ୍ଡ ସର୍ବତ୍ର ଛୋଟ ଛୁଆ ଗୁଡ଼ାଏ ଛିଣ୍ଡାକନା ଗୁରେଇ ହୋଇ ଘେରି ଯା'ନ୍ତି । ହାତପାତି ମାଗନ୍ତି । ଅତି କରୁଣ ସେ ସବୁ ଦୃଶ୍ୟ । ମଣିଷ ଭିତରେ ଥିବା ଦୟାଭାବଟି ଖିନ୍‌ଭିନ୍ ହେଉଛି, କିନ୍ତୁ ସେମାନଙ୍କୁ ଦେବାରେ ସାମର୍ଥ୍ୟ ନାହିଁ ବା ସୁଯୋଗ ନଥାଏ । ପାଗଳ, ପାଗେଳୀ ରାସ୍ତାରେ ଅସନାମସନା ଅର୍ଦ୍ଧନଗ୍ନ ଅବସ୍ଥାରେ ବୁଲୁଛନ୍ତି । ବେଳେବେଳେ ଖାଇବାକୁ ହାତ ପତେଇ ଦାନ୍ତ ନିକୁଟି ମାଗୁଛନ୍ତି । କେତେକ ମହିଳା ଓ ପୁରୁଷ ଛୁଆର ରୋଗ ହୋଇଛି, ନହେଲେ ମୁକ-ବଧିର ଅକର୍ମଣ୍ୟ କହି ଘରକୁ ଘର ବୁଲି ମାଗୁଛନ୍ତି । ଅସମ୍ଭବ ଭାବେ ଭିନ୍ନ ଭିନ୍ନ ରକମର ଭିକାରୀଙ୍କ ରାଜଧାନୀରେ ଘୂରୀ ବୁଲୁଛନ୍ତି ।

ସମସ୍ତ ସାମାଜିକ ବ୍ୟବସ୍ଥାରେ ଏପରି ଭିକାରୀମାନେ ଅବଶ୍ୟ ରହିବେ । ତେବେ ଦୟାର୍ଦ୍ଦ ମଣିଷମାନଙ୍କ ପାଇଁ ଯେପରି ସମସ୍ୟା ସୃଷ୍ଟି ନ ହୁଏ ବା ରାସ୍ତାଘାଟରେ ଅସ୍ୱାସ୍ଥ୍ୟକର ପରିସ୍ଥିତି ଯେପରି ସୃଷ୍ଟି ନ ହୁଏ ସେ ସବୁ ଦେଖିବାର କଥା । ମୁସଲମାନ ଧର୍ମରେ ଏକ ଉତ୍ତମ ବ୍ୟବସ୍ଥା ଅଛି । ସପ୍ତାହର ଗୋଟିଏ ଦିନ (ଶୁକ୍ରବାର) ଦାନଦେବାର ବ୍ୟବସ୍ଥା ରହିଛି । ଗୋଟିଏ ଜାଗାରେ ମସ୍‌ଜିଦ୍ ପାଖରେ ବା ନିର୍ଦ୍ଦିଷ୍ଟ ସ୍ଥାନରେ ଠୁଳ ହେବେ ଓ ଦାନ ଗ୍ରହଣ କରନ୍ତି । ସେହିପରି ଓଡ଼ିଆଙ୍କ ସାଂସ୍କୃତିକ ପରମ୍ପରା ଭିତରେ ଦେଖିବାକୁ ମିଳେ ଗୋଟିଏ ବା ଦୁଇଟି ବର୍ଗର ଦାନ ଗ୍ରହଣକାରୀ ଗାୟକ ଦଳ ଦୁଆରୁ ଦୁଆର ବୁଲୁଥିବା ଦେଖାଯାଏ ଓ ଦାନଗ୍ରହଣ କରନ୍ତି । ସେମାନଙ୍କ ମଧ୍ୟରେ ଚକୁଳିଆ ପଣ୍ଡା ଓ ନାଥ ସଂପ୍ରଦାୟରେ ଯୋଗୀମାନେ ଥା'ନ୍ତି । ଚକୁଳିଆ ପଣ୍ଡାମାନେ କାର୍ତ୍ତୀକ ଓ ମାଘ ମାସରେ ଦାଣ୍ଡରେ ଗୀତ ଗାଇବୁଲନ୍ତି, ଦାନ ମାଗନ୍ତି । ବୋଲନ୍ତି -

"ଆହେ ମା' ଶୁଣ, ଦେଇଥିଲେ ଦାନ ତୁମେ ବାନ୍ଧି ନେବ ପୂଣ୍ୟ ।"

ସେହିପରି 'ଯୋଗୀଥାଳ' 'ପୂଣ୍ୟଥାଳ' ଭାବେ ବିବେଚିତ ହୁଏ । କିନ୍ତୁ ଏମାନଙ୍କୁ ଭିକାରୀ କୁହାଯାଇ ନଥାଏ । ଏମାନେ ସତେଯେପରି ଦାତାଙ୍କୁ ଅନୁଗୃହୀତ କରିଥାନ୍ତି । ଏହା ବିରକ୍ତିକର ବ୍ୟବସ୍ଥା ନୁହେଁ । କିନ୍ତୁ ପୂର୍ବବର୍ଣ୍ଣିତ ଭିକ୍ଷାବୃତ୍ତି ବା ଭିକାରୀ ଦଳର ଉପସ୍ଥିତି ସ୍ମାଟ ସିଟିର ଆଧୁନିକ ଜୀବନଶୈଳୀରେ ଏକ ପ୍ରକାର ବ୍ୟାଧି କହିଲେ ଅତ୍ୟୁକ୍ତି ହେବନାହିଁ । ଅତ୍ୟଧିକ ପରିମାଣର ଏହି ରୁଗ୍‌ଣ ବ୍ୟବସ୍ଥା ଭୁବନେଶ୍ୱରରେ ଦୃଷ୍ଟିଗୋଚର ହୋଇଥାଏ ।

ଏକଥା ମନେ ରଖିବା ଉଚିତ୍ ଯେ ମଣିଷ ଭିତରେ ଦୟାର ଅନ୍ତନାହିଁ । ସେ ଗରିବ ହେଲେବି ଖାଇବା ପାଇଁ ବାଢ଼ିଥିବା ଖାଦ୍ୟପଦାର୍ଥ ବାହାରେ ଡାକୁଥିବା ଯୋଗୀ-ଭିକାରୀଙ୍କୁ ଦେଇ ନିଜେ ଉପାସ ରହିଥାଏ । ଅନେକ ଦୃଷ୍ଟାନ୍ତ ଅଛି । ମହାତ୍ମାଗାନ୍ଧି ତାଙ୍କର ପଦ ଯାତ୍ରାବେଳେ ଓଡ଼ିଆଙ୍କର ଭିତରେ ଥିବା ଏକ ଅଦ୍‌ଭୁତ ଚେତନା ଅନୁଭବ କଲେ । ହାଡ଼କଙ୍କାଳ ସାର ଦୁର୍ଭୀକ୍ଷ ପ୍ରପିଡ଼ୀତ ଲୋକେ ମଧ୍ୟ ଅଧଲାଏ ପାହୁଲାଏ ଆଣି ଗାନ୍ଧିଜୀଙ୍କୁ ଟେକି ଦେଉଥିଲେ । ଅଭାବ ଭିତରେ ଦେବାର ଆନ୍ତରିକତା ଓଡ଼ିଶାର ମଣିଷ ଭିତରେ ଥିବାର ସେ ସ୍ପଷ୍ଟ ଲକ୍ଷ୍ୟ କରିଥିଲେ ।

ଦାନ ଦେବା ଯେପରି ଏକ ମାନବୀୟ ମହତ୍‌ଗୁଣ, 'ଭିକାରୀ'ର ଭିକ୍ଷାବୃତ୍ତି ସେହିପରି ଏକ ଅପସଂସ୍କୃତି ବୋଲି ଧରାଯାଇଥାଏ । କେହି ଭାବିବା ଠିକ୍ ହେବ ନାହିଁ ଯେ ବୌଦ୍ଧଧର୍ମର ଶ୍ରମଣ ବା ଭିକ୍ଷୁମାନେ ଅଥବା ମହିମାଧର୍ମର ସନ୍ନ୍ୟାସୀଙ୍କର ଭିକ୍ଷାଗ୍ରହଣ ବ୍ୟବସ୍ଥାସବୁ ଅପସଂସ୍କୃତି । ବରଂ ସନ୍ନ୍ୟାସଧର୍ମର ଏକ ଉଚ୍ଚ ସାଂସ୍କୃତିକ ପରମ୍ପରା ।

ଅବଶ୍ୟ ଏହି ସନ୍ନ୍ୟାସୀ, ଯୋଗୀ, ଚକୁଳିଆ ପଣ୍ଡାଙ୍କର ଭିକ୍ଷାବୃତ୍ତି ସହର ବା ଭୁବନେଶ୍ୱରରେ କ୍ୱଚିତ୍ ଦେଖାଯାଏ ଏବଂ ରାଜ୍ୟରେ କ୍ୱଚିତ୍ ଦେଖାଯାଏ । କିନ୍ତୁ ପୂର୍ବବର୍ଣ୍ଣିତ ଭିକାରୀଦଙ୍କ ଭୁବନେଶ୍ୱରରେ ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ଦାନ ଦେବାର ପ୍ରକ୍ରିୟାକୁ ସମ୍ମାନ ଜଣାଇ ଭିକାରୀ ବୃତ୍ତି ସହରରୁ ବନ୍ଦ କରିବା ହିଁ ଏକ ସ୍ମାର୍ଟସିଟିର ମୁଖ୍ୟକାର୍ଯ୍ୟ । କିଛିବର୍ଷ ତଳେ ୨୦୦୩ ମସିହାରେ ଭୁବନେଶ୍ୱରକୁ ଭିକାରୀ ମୁକ୍ତ ସହର (Beggar Free City) କରିବାର ପ୍ରୟାସ କରା ଯାଇଥିଲା । ଜଣେ ଆଇ.ଏ.ଏସ୍. ଉଚ୍ଚପଦସ୍ଥ ଅଧିକାରିଣୀ ସରକାରୀ ପଦବୀରେ ଥାଇ ବେସରକାରୀ ଉଦ୍ୟମରେ ଏହି କାର୍ଯ୍ୟ ଆରମ୍ଭ କରିଥିଲେ । ନିଜେ ଲେଖକ ତାଙ୍କୁ ପୂର୍ଣ୍ଣ ପ୍ରୋତ୍ସାହନ ଓ ସହଯୋଗ ଯୋଗାଇଥିଲେ । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଏହାର ମୁଖ୍ୟ କାର୍ଯ୍ୟାଳୟ ଉନ୍ମୋଚନ କରିଥିଲେ । ଏହି କାର୍ଯ୍ୟକ୍ରମର ଉଦ୍ଦେଶ୍ୟ ଥିଲା ଯେ' ପ୍ରଥମ ପର୍ଯ୍ୟାୟରେ ସହରରୁ ପାଗଳୀ ପାଗଳମାନଙ୍କୁ ନେଇ ଉପଯୁକ୍ତ ଚିକିତ୍ସା ପ୍ରଦାନ ଓ ଥଇଥାନ କରାଇବା । ରାସ୍ତାକଡ଼ରେ ବୁଲୁଥିବା ସମସ୍ତ ଛୋଟ ଛୁଆଙ୍କୁ ନେଇ ଗୋଟିଏ ବା ଦୁଇଟି ଆବାସିକ ବିଦ୍ୟାଳୟରେ ଭର୍ତ୍ତି କରିବା । ମହିଳା ଭିକାରୀ ବା ଅସହାୟାଙ୍କୁ ନେଇ ଗୋଟିଏ ଉତ୍ତମ ସଂସ୍ଥା ନିକଟରେ ଛାଡ଼ିବା । ଏହିସବୁ ସାହାଯ୍ୟକାରୀ ବେସରକାରୀ ସେବାକାରୀ ସଂସ୍ଥାମାନ ଠାବ ହୋଇଥିଲା ଓ କାର୍ଯ୍ୟ ଆରମ୍ଭ ହୋଇଥିଲା । ଗୋଟିଏ ଟୋଲ୍ ଫ୍ରି ହେଲ୍ପ ଲାଇନ୍ ମଧ୍ୟ ସ୍ଥାପିତ ହୋଇଥିଲା । ସମ୍ବାଦ ମିଳିବା ମାତ୍ରକେ ଗାଡ଼ିଯାଇ ଅସହାୟ, ଅସହାୟାମାନଙ୍କୁ ଉଦ୍ଧାର ରକିବାର ପ୍ରକ୍ରିୟା ଥିଲା । ଏହି କାର୍ଯ୍ୟ ସଂପୂର୍ଣ୍ଣ ହେବାର ବିସ୍ତୃତ ରିପୋର୍ଟ ପ୍ରସ୍ତୁତ ହେବା ସଂଗେ ସଂଗେ ସହର ଭିତରେ ଆଶ୍ରୟସ୍ଥଳୀ ନିର୍ମାଣର ପ୍ରସ୍ତାବ ଆଗେଇଥିଲା । ପ୍ରଥମ ପର୍ଯ୍ୟାୟର କାର୍ଯ୍ୟ ପୂର୍ଣ୍ଣ ସଂପାଦନ ହେବାପରେ ମନ୍ଦିର ନିକଟରେ ଥିବା ଭିକାରୀମାନଙ୍କୁ ମଧ୍ୟ ବନ୍ଦ କରାଯିବାର ଲକ୍ଷ୍ୟଥିଲା । ଏଥିପାଇଁ ଆବଶ୍ୟକ ହେଲେ ଆଇନ ପ୍ରଣୟନ କରାଯିବା କଥା ମଧ୍ୟ ଚିନ୍ତା କରାଯାଇଥିଲା ଓ ସରକାର ଏହି କାର୍ଯ୍ୟ ପୂର୍ଣ୍ଣଭାବେ ଆପଣେଇବେ ଏ ବିଶ୍ୱାସ ଥିଲା ।

ଏହି କାର୍ଯ୍ୟର ସବୁଠାରୁ ମହତ୍ ଦିଗଟି ଥିଲା ଯେ ମନ୍ଦିର ଓ ବିବାହ ଓ କଲ୍ୟାଣ ମଣ୍ଡପ ପାଖରେ ହୁଣ୍ଡିମାନ ସ୍ଥାପନ କରାଯାଇ ଦାନଶିଳ ବ୍ୟକ୍ତିମାନଙ୍କଠାରୁ ଦାନ ଗ୍ରହଣ କରାଯିବ । ସଂଗୃହୀତ ଅର୍ଥ ସାହାଯ୍ୟରେ ସମସ୍ତ କୁଷ୍ଠାଶ୍ରମ ସହ ଅକର୍ମଣ୍ୟ, ଅସମର୍ଥ, ପାଗଳ ପାଗେଳୀ ପ୍ରଭୃତିକ ଆବଶ୍ୟକତା ପୂରଣ ସହିତ ଶିଶୁମାନଙ୍କ ଶିକ୍ଷା ଓ କର୍ମଯୋଗାଣର ବ୍ୟବସ୍ଥା ରହିବ ।

ଲୋକଙ୍କ ଭିତରେ 'ଦାନ' ନାମକ 'ପୁଣ୍ୟ' ପ୍ରତି ଆଗ୍ରହର ଅଭାବ ନାହିଁ । ସବୁ ଅସମର୍ଥ ବର୍ଗଙ୍କୁ ସହାୟତା ଦେବାପାଇଁ ଅନେକ ଅର୍ଥ ମିଳିଥାନ୍ତା । ସରକାରୀ ବଜେଟ୍

ଉପରେ ଚାପ ସୃଷ୍ଟି ହୋଇ ନଥାନ୍ତା । ବରଂ ମ୍ୟୁନିସିପାଲିଟି ବା କର୍ପୋରେସନ୍ ଅସହଯୋଗ କରି ନଥାନ୍ତେ ବା ସହର ମଧ୍ୟରେ ଥିବା କର୍ପୋରେଟ୍ କାର୍ଯ୍ୟାଳୟରୁ ସାମାଜିକ ସୁରକ୍ଷା ପାଣ୍ଠି ନାମରେ କର୍‌ପୋରେସନ୍ ଅର୍ଥ ଆଦାୟ କରିପାରିଥାନ୍ତା ।

କିନ୍ତୁ ଦୁଃଖର ବିଷୟ ଏହି ଯେ ଅତ୍ୟନ୍ତ ଆନ୍ତରିକତାର ସହିତ କାର୍ଯ୍ୟ କରୁଥିବା ଆଇ.ଏ.ଏସ୍ ଅଧିକାରିଣୀ ଶ୍ରୀମତୀ ଅପରାଜିତା ଷଡ଼ଙ୍ଗୀ ବଦଳି ହୋଇଯିବା ଓ ସାହାଯ୍ୟ କରୁଥିବା ହାତଟି କ୍ଷମତାରୁ ଅପସରି ଯିବା ଫଳରେ ମହତ୍ ଉଦ୍ୟମଟି ବନ୍ଦ ହୋଇଗଲା ।

ମନେହୁଏ ସତେ ଯେପରି ରାଜ୍ୟଟି ଭିକାରୀ ପାଲଟି ଯାଇଛି । ଉପରୁ ଏହି ଭିକାରୀ ପ୍ରବୃତି ତଳକୁ ଗଡ଼ି ଚାଲିଛି । ସେକ୍ରେଟେରିଏଟ୍ କେବଳ ହିତାଧିକାରୀ ବା ଭିକାରୀ ତାଲିକା ପ୍ରସ୍ତୁତରେ ବ୍ୟସ୍ତ । ଗୋଟିଏ ସ୍ମାର୍ଟନେସ୍ (Smartness) ଆଣିବାକୁ ସମୟ ମିଳୁନାହିଁ । ରାଜଧାନୀ ସହର ସ୍ମାର୍ଟସିଟି ଭାବେ ଘୋଷିତ ହେବାପରେ ପ୍ରଥମତଃ ଗୋଟିଏ ସାଂସ୍କୃତିକ ଚେତନା ଓ ସାମାଜିକ ଦାୟିତ୍ୱ ବା କର୍ତ୍ତବ୍ୟର ଖସଡ଼ା ପ୍ରସ୍ତୁତ ହେବା ଆବଶ୍ୟକ । ରାସ୍ତାଘାଟ ପ୍ରଶସ୍ତ ଓ ସୁନ୍ଦର କରିବା ବା ରାସ୍ତାକଡ଼ ପାଚେରୀଗୁଡ଼ିକୁ ରଙ୍ଗବେରଙ୍ଗର କଳାକୃତି ସଜାଇଦେଇ କର୍ତ୍ତବ୍ୟ ନିର୍ବାହ ହେଲାବୋଲି ଭାବିବା ଆଦୌ ଠିକ୍ ନୁହେଁ । ରାସ୍ତାକଡ଼ରେ ବୁଲୁଥିବା ଲଙ୍ଗଳା ଫୁଙ୍ଗୁଳା ଭିକାରୀ ପଲର ବା ପାଚେରୀ କଡ଼ରେ ରୁଗ୍ଣ ଅପର୍ଚ୍ଛନିଆ ମା' ପିଲା ଜରି ଗୋଟାଇବା ବ୍ୟବସ୍ଥା ସଂପୂର୍ଣ୍ଣ ବନ୍ଦ ହେବା ଦରକାର । ମନ୍ଦିର ପାଖରେ କୌଣସି ବର୍ଗର ଭିକାରୀର ସର୍ବକାଳୀନ ଉପସ୍ଥିତି ଏକ ସାଂସ୍କୃତିକ ବିଡ଼ମ୍ବନା ବୋଲି ବିଚାରିବାକୁ ହେବ ।

ସେମାନଙ୍କୁ ସୁସ୍ଥ ରଖିବା, ସାମାଜିକ ସ୍ୱୀକୃତି ଦେବାର ବ୍ୟବସ୍ଥା କରିବା, ସେମାନଙ୍କ ପାଇଁ ଉନ୍ନତମାନର ଜୀବନଶୈଳୀର ବ୍ୟବସ୍ଥା ସରକାର ଓ ସମାଜର ଦାୟିତ୍ୱ । ସ୍ମାର୍ଟସିଟିର ସ୍ୱପ୍ନ ବାଣ୍ଟୁଥିବା ସମସ୍ତ ରାଜନେତା ତ ପଦାଧିକାରୀମାନେ ପ୍ରଥମେ ଭୁବନେଶ୍ୱରକୁ 'ଭିକାରୀ ମୁକ୍ତ' କରିବେ ବୋଲି ଆଶା କରିବା ଯଥାର୍ଥ । ଏଠି ଏହା ସଫଳ ହେଲେ ପୁରୀ ସମେତ ଅନ୍ୟ ସ୍ଥାନରେ ଏହା କାର୍ଯ୍ୟକାରୀ ହେବା ସହିତ ଓଡ଼ିଶା ଭିକାରୀମୁକ୍ତ ରାଜ୍ୟଭାବେ ନୂଆ ପରିଚୟ ସୃଷ୍ଟି କରିପାରିବ । ସେଥିପାଇଁ ଅବଶ୍ୟ ସମସ୍ତ ରାଜନୈତିକ ଇଚ୍ଛାଶକ୍ତି ସଶକ୍ତ କାର୍ଯ୍ୟନିର୍ବାହୀ ପ୍ରକ୍ରିୟା ତଥା ମାନସିକତା ଦାରିଦ୍ର୍ୟ ବ୍ୟାଧିମୁକ୍ତ ହେବା ଆବଶ୍ୟକ ।



# ୨୦୧୭ର ଓଡ଼ିଶା ଅଧିନିୟମ ୧୦

## ଓଡ଼ିଶା ବସ୍ତିବାସିନ୍ଦାମାନଙ୍କ ଭୂମି ଅଧିକାର ଅଧିନିୟମ, ୨୦୧୭

ବସ୍ତିଗୁଡ଼ିକର ପୁନର୍ବିକାଶ, ଥଇଥାନ ଓ ଉତ୍‌ଥାନ ନିମନ୍ତେ ଚିହ୍ନଟ ହୋଇଥିବା ବସ୍ତିବାସିନ୍ଦାମାନଙ୍କୁ ଭୂମି ଅଧିକାର ଅର୍ପଣ କରିବା ପାଇଁ ବ୍ୟବସ୍ଥା ରକିବା ସକାଶେ ତଥା ତତ୍ ସଂପୃକ୍ତ ଓ ତତ୍ ଆନୁଷଙ୍ଗିକ ବିଷୟଗୁଡ଼ିକ ନିମନ୍ତେ ଏକ ଅଧିନିୟମ ।

ଭାରତ ଗଣରାଜ୍ୟର ୬୮ତମ ବର୍ଷରେ ଓଡ଼ିଶା ରାଜ୍ୟର ବିଧାନ ମଣ୍ଡଳ ଦ୍ୱାରା ନିମ୍ନମତେ ଅଧିନିୟମିତ ହେଉ :-

### ଅଧ୍ୟାୟ -୧

### ପ୍ରାରମ୍ଭିକ

1. (i) ଏହି ଅଧିନିୟମଟି ଓଡ଼ିଶା ବସ୍ତି ବାସିନ୍ଦାମାନଙ୍କ ଭୂମି ଅଧିକାର ଅଧିନିୟମ, ନାମରେ ଅଭିହିତ ହେବ ।

   (ii) ଏହା ସମଗ୍ର ଓଡ଼ିଶା ରାଜ୍ୟର ପୌର ଅଞ୍ଚଳଗୁଡ଼ିକ ପ୍ରତି ବିସ୍ତାରିତ ଅଟେ ।

   (iii) ରାଜ୍ୟ ସରକାର ଅଧିସୂଚନା ଦ୍ୱାରା ଯେଉଁ ତାରିଖ ନିୟତ କରିବେ, ଏହା ସେହି ତାରିଖ ଠାରୁ ବଳବତ୍ତର ହେବ ଏବଂ ବିଭିନ୍ନ ପୌର ଅଞ୍ଚଳ ପାଇଁ ଭିନ୍ନ ଭିନ୍ନ ତାରିଖ ନିୟତ କରାଯାଇ ପାରିବ

2. ପ୍ରସଙ୍ଗ ଅନ୍ୟଥା ଆବଶ୍ୟକ କରୁ ନଥିଲେ, ଏହି ଅଧିନିୟମରେ,

   (କ) 'ପ୍ରାଧିକୃତ ଅଧିକାରୀ ଅର୍ଥ ବସ୍ତ ପୁନର୍ବିକାଶ ଓ ପୁନର୍ବାସ କମିଟିର ମୁଖ୍ୟ ବା ବିହିତ ହେବା ମତେ ସେପରି କ୍ଷମତାମାନ ପ୍ରୟୋଗ କରିବାକୁ ରାଜ୍ୟ ସରକାରଙ୍କ ଆଦେଶ ଦ୍ୱାରା ପ୍ରାଧିକୃତ ଅନ୍ୟ କୌଣସି ଅଧିକାରୀ;

   (ଖ) 'ମୌଳିକ ପୌର ସେବା' ଅର୍ଥ ପାନୀୟ ଜଳ ଯୋଗାଣ, ପରିମଳ, ନାଳ, ନର୍ଦ୍ଦମା, କଠିନ ବର୍ଜ୍ୟବସ୍ତୁ ନିଷ୍କାସନ ଓ ରାସ୍ତା ଆଲୋକୀକରଣ ସେବା;

   (ଗ) "ଜିଲ୍ଲାପାଳ" ଅର୍ଥ ଏକ ଜିଲ୍ଲାର ଜିଲ୍ଲାପାଳ ଏବଂ ଏଥିରେ ଅତିରିକ୍ତ ଜିଲ୍ଲାପାଳ ବା ଏହି ଅଧିନିୟମ ଅନୁଯାୟୀ ଜଣେ ଜିଲ୍ଲାପାଳଙ୍କ କୃତ୍ୟ ସଂପାଦନ କରିବା ପାଇଁ ରାଜ୍ୟ ସରକାରଙ୍କ ଦ୍ୱାରା ବିଶେଷଭାବେ ନିଯୁକ୍ତ ଜଣେ ଅଧିକାରୀ ଅନ୍ତର୍ଭୁକ୍ତ ଅଟନ୍ତି;

(ଘ) 'କମିଟି' ଅର୍ଥ ଧାରା ୬ ଅନୁଯାୟୀ ଗଠିତ ପୌର ଅଞ୍ଚଳ ବସ୍ତି ପୁନର୍ବିକାଶ ଓ ପୁନର୍ବାସ କମିଟି ।

(ଙ) ଆର୍ଥିକ ଦୁର୍ବଳ ଶ୍ରେଣୀ' ଅର୍ଥ ଯେଉଁ ଆର୍ଥିକ ଦୁର୍ବଳ ଶ୍ରେଣୀ ହିତାଧିକାରୀ ପରିବାରର ଆୟ, ରାଜ୍ୟ ସରକାରଙ୍କ ଦ୍ୱାରା ସମୟକୁ ସମୟ ଅଧିସୂଚିତ ହେବା ମତେ ସେପରି ସୀମା ପର୍ଯ୍ୟନ୍ତ ହେଉଥିବ ସେପରି ପରିବାର;

(ଚ) ପରିବାର ଅର୍ଥ ପତି, ପତ୍ନୀ, ଅବିବାହିତ ପୁତ୍ର, ଅବିବାହିତା କନ୍ୟା ବା ବସ୍ତି ବାସିନ୍ଦାଙ୍କ ରକ୍ତ ସଂପର୍କୀୟ ଓ ତାଙ୍କ ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ ଅନ୍ୟ କୌଣସି ବ୍ୟକ୍ତି;

(ଛ) ଆର୍ଥିକ ଅନୁଷ୍ଠାନ' ଅର୍ଥ ବ୍ୟାଙ୍କି ବିନିମୟ ଅଧିନିୟମ, ୧୯୪୯ ଅନୁଯାୟୀ ବ୍ୟାଙ୍କିଂ ବ୍ୟବସାୟ କରିବାକୁ ଲାଇସେନ୍‌ସ ପ୍ରାପ୍ତ କୌଣସି କମ୍ପାନୀ ଏବଂ ଏଥିରେ ଜାତୀୟ ଗୃହନିର୍ମାଣ ବ୍ୟାଙ୍କ ଅଧିନିୟମ ୧୯୮୭ ଅନୁଯାୟୀ ରେଜିଷ୍ଟ୍ରିକରଣ ପ୍ରମାଣପତ୍ର ହାସଲ କରିଥିବା ଏକ ଗୃହ ନିର୍ମାଣ ଆର୍ଥିକ ଅନୁଷ୍ଠାନ ମଧ ଅନ୍ତର୍ଭୁକ୍ତ;

(ଜ) 'ସରକାରୀ ଭୂମି' ଅର୍ଥ ରାଜ୍ୟ ସରକାର ବା କୌଣସି ସରକାରୀ ଉଦ୍ୟୋଗ ବା ପୌର ପରିଷଦ ବା ଅଧିସୂଚୀତ କ୍ଷେତ୍ର ପରିଷଦ, ଯଥାସ୍ଥିତି,ଙ୍କ ମାଲିକାନା ଥିବା ବା ତାଙ୍କ ଦ୍ୱାରା ଅର୍ଜିତ କୌଣସି ଭୂମି;

(ଝ) 'ମୌଳିକ ସ୍ଥାନର ପୁନର୍ବିକାଶ' ଅର୍ଥ ଯେଉଁ ଭୂମି ଉପରେ ବସ୍ତି ଅବସ୍ଥିତ ସେଠାରେ ରହୁଥିବା ବସ୍ତିବାସିନ୍ଦାମାନଙ୍କୁ ମୌଳିକ ପୌର ସୁବିଧା ଓ ଭିତ୍ତିଭୂମି ଯୋଗାଇ ଦେଇ ବିଦ୍ୟମାନ ବସ୍ତି ଅଞ୍ଚଳର ପୁନର୍ବିକାଶ ପ୍ରକ୍ରିୟା;

(ଡ) 'ଭୂମିହୀନ ବ୍ୟକ୍ତି' ଅର୍ଥ ଜଣେ ଭାରତୀୟ ନାଗରିକ, ଯାହାଙ୍କର ପୌରାଞ୍ଚଳରେ ନିଜ ନାମରେ ବା ତାଙ୍କ ପରିବାରର କୌଣସି ସଦସ୍ୟଙ୍କ ନାମରେ କୌଣସି ଗୃହ ବା ଭୂମି ନଥି ବା ଏହି ଅଧିନିୟମ ଅନୁଯାୟୀ ଭୂମି ଅଧିକାର ମଞ୍ଜୁର ହୋଇ ନଥିବ ବା ଉତ୍ତରାଧିକାରୀ ସୂତ୍ରେ ପ୍ରାପ୍ତ ହୋଇ ନଥିବ;

(ଚ) 'ଭୂମି ଅଧିକାର' ଅର୍ଥ ଧାରା ୩ ଅନୁଯାୟୀ ବସ୍ତି ବାସିନ୍ଦାଙ୍କୁ ନ୍ୟସ୍ତ କରାଯାଇଥିବା ଭୂମି ଅଧିକାର;

(ଠ) 'ସଦସ୍ୟ' ଅର୍ଥ ଯଥାସ୍ଥିତି, କମିଟି ବା ଉପ-କମିଟିର ଜଣେ ସଦସ୍ୟ ଏବଂ ଏଥିରେ ଅଧକ୍ଷ ଅନ୍ତର୍ଭୁକ୍ତ ଅଟନ୍ତି;

(ଡ) 'ଭୋଗ ଦଖଲ' ଅର୍ଥ ନିବାସ ଉଦ୍ଦେଶ୍ୟରେ ଜଣେ ବସ୍ତି ବାସିନ୍ଦାଙ୍କ ଦ୍ୱାରା ଭୂମିର ଭୋଗଦଖଲ

(ଢ଼) 'ବିହିତ' ଅର୍ଥ ଏହି ଅଧିନିୟମ ଅନୁଯାୟୀ ବିହିତ; '

(ଣ) 'ସର୍ବସାଧାରଣ ସ୍ୱାର୍ଥ' ଅର୍ଥ ନଗର ଉନ୍ନୟନ ଯୋଜନା ଅନୁଯାୟୀ ବିହିତ ହେବା ମତେ ଭୂମିର ବ୍ୟବହାର ବା ଅନୁମୋଦିତ ନଗର ଉନ୍ନୟନ ଯୋଜନା ଅନୁଯାୟୀ ଆଞ୍ଚଳିକ ବିକାଶ ଯୋଜନା ବା ସର୍ବସାଧାରଣଙ୍କୁ ମୌଳିକ ପୌର ସେବାର ବ୍ୟବସ୍ଥା ବା ପରିବେଶ ପ୍ରତି ବିପଦସଂକୁଳ ସ୍ଥଳରେ ବା ପରିବେଶ ପ୍ରତି ସମ୍ବେଦନ ସ୍ଥଳ ବା ଐତିହ୍ୟ ସ୍ଥଳରେ ମାନବ ବସତିର ନିଷେଧ;

(ତ) "ପୁନର୍ବିକାଶ" ଅର୍ଥ ସମୟକୁ ସମୟ ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରଣୀତ ଗୃହନିର୍ମାଣ ପରିକଳ୍ପନା ଅନୁସାରେ ବିଦ୍ୟମାନ ବସ୍ତିକୁ ମୌଳି ପୌର ସେବା ଯୋଗାଇ ଓ ଗୃହ ବ୍ୟବସ୍ଥାର ଉନ୍ନୟ ସୁଗମିତ କରି ସେଗୁଡ଼ିକର ବିକାଶ ସାଧନ କରିବା;

(ଥ) 'ପୁନର୍ବାସ' ଅର୍ଥ ସମୟକୁ ସମୟ ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରଣୀତ ଗୃହନିର୍ମାଣ ପରିକଳ୍ପନା ଅନୁସାରେ ବସ୍ତିବାସିନ୍ଦାମାନଙ୍କୁ ଅନ୍ୟ ସ୍ଥାନରେ ଥଇଥାନ କରିବା;

(ଦ) 'ବସ୍ତି' ବା 'ବସ୍ତି ଅଞ୍ଚଳ' ଅର୍ଥ ପୌର ଅଞ୍ଚଳରେ ସରକାରୀ ଜମିରେ ଅତି ନିକୃଷ୍ଟ ଧରଣର ଲଗାଲଗି ହୋଇ ଅସ୍ୱାସ୍ଥ୍ୟକର ପରିବେଶରେ ଅନ୍ତତଃ କୋଡ଼ିଏ ଗୋଟି ଅସ୍ଥାୟୀ ବସାଘର ଥିବା ସୀମିତ ବସତି ଯେଉଁଠାରେ ସାଧାରଣତଃ ପରିମଳ ଓ ପାନୀୟ ଜଳର ପର୍ଯ୍ୟାପ୍ତ ସୁବିଧା ନଥିବ;

(ଧ) 'ବସ୍ତି ବାସିନ୍ଦା' ଅର୍ଥ ବସ୍ତି ଅଞ୍ଚଳର ସୀମା ମଧ୍ୟରେ ବାସ କରୁଥିବା କୌଣସି ଭୂମିହୀନ ବ୍ୟକ୍ତି;

(ନ) 'ଅନୁମତିଯୋଗ୍ୟ ବସ୍ତି' ଅର୍ଥ କମିଟି ଦ୍ୱାରା ନିଷ୍ପତ୍ତି ହେବାମତେ ଯେଉଁ ସ୍ଥାନରେ ମାନବ ବସତି ରହିଲେ ସେଠାକାର ନିବାସୀମାନଙ୍କର ବା ବସତିର ସୁରକ୍ଷା, ସ୍ୱାସ୍ଥ୍ୟ ବା ଜୀବନ ପ୍ରତି ଅହେତୁକ ବିପଦ ଆଶଙ୍କା ନଥାଏ, ବା ଉକ୍ତ ସ୍ଥାନ ସର୍ବସାଧାରଣ ସ୍ୱାର୍ଥ ବିରୋଧୀ ବୋଲି ବିବେଚିତ ହେଉନଥାଏ ବା ଉକ୍ତ ଭୂମି କୌଣସି ସର୍ବସାଧାରଣ ବା ଉନ୍ନୟନ ଉଦ୍ଦେଶ୍ୟରେ ଆବଶ୍ୟକ ହେଉନଥାଏ, ସେପରି ବସତି;

(ପ) 'ଅନୁମତି ଅଯୋଗ୍ୟ ବସତି' ଅର୍ଥ ଯେଉଁ କ୍ଷେତ୍ରରେ ମାନବ ବସତି ରହିଲେ ସେଠାକାର ନିବାସୀମାନଙ୍କ ସୁରକ୍ଷା ବା ସ୍ୱାସ୍ଥ୍ୟ ବା ଜୀବନ ପ୍ରତି ଅହେତୁକ ବିପଦ ଆଶଙ୍କା ଥାଏ ବା ଯେଉଁ କ୍ଷେତ୍ରରେ ବସତି ହେଲେ

ତାହା ସର୍ବସାଧାରଣ ସ୍ୱାର୍ଥ ବିରୋଧୀ ବୋଲି କମିଟି ବିବେଚନା କରନ୍ତି, ସେପରି କ୍ଷେତ୍ର;

(ଫ) 'ପୌର ଅଞ୍ଚଳ' ଅର୍ଥ ଓଡ଼ିଶା ପୌର ଅଧିନିୟମ, ୧୯୫୦ ଅନୁଯାୟୀ ଗଠିତ ପୌର ପରିଷଦ ଓ ଅଧିସୂଚିତ କ୍ଷେତ୍ର ପରିଷଦ ମଧ୍ୟରେ ଅଞ୍ଚଳ;

(ବ) ଏଥିରେ ଯେଉଁ ଶବ୍ଦ ଓ ଅଭିବ୍ୟକ୍ତିଗୁଡ଼ିକ ବ୍ୟବହୃତ ହୋଇଛି କିନ୍ତୁ ସଂଜ୍ଞା କରାଯାଇନାହିଁ, ସେଗୁଡ଼ିକର ଅର୍ଥ, ଓଡ଼ିଶା ପୌର ଅଧିନିୟମ, ୧୯୫୦ରେ ଯାହା ରହିଛି ତାହାହିଁ ହେବ ।

## ଅଧ୍ୟାୟ -୨

## ଭୂମି ଅଧିକାର

3. (1) ତତ୍ ସମୟରେ ବଳବତ୍ତର ଥିବା ଅ ଅନ୍ୟ କୌଣସି ରାଜ୍ୟ ବିଧିରେ ଯାହାକିଛି ଥିବାସତ୍ତ୍ୱେ ଏବଂ ଉପ-ଧାରା (2) ର ବ୍ୟବସ୍ଥାଗୁଡ଼ିକ ପ୍ରତି ସାପେକ୍ଷ ହୋଇ, ରାଜ୍ୟ ସରକାରଙ୍କ ଦ୍ୱାରା ଅଧିସୂଚିତ ହେବା ମତେ ସେପରି ତାରିଖ ସୁଦ୍ଧା କୌଣସି ପୌରାଞ୍ଚଳରେ ଏକ ବସ୍ତିରେ ଭୂମି ଦଖଲରେ ଥିବା ପ୍ରତ୍ୟେକ ଭୂମିହୀନ ବ୍ୟକ୍ତି, ଭୂମି ବନ୍ଦୋବସ୍ତ ପାଇଁ ହକ୍‌ଦାର ହେବେ ଏବଂ ଏହି ଅଧିନିୟମର ବ୍ୟବସ୍ଥା ଅନୁସାରେ ଭୂମି ଅଧିକାର ପ୍ରମାଣପତ୍ର ଜାରି କରାଯିବ ।

(2) ଜଣେ ବସ୍ତି ବାସିନ୍ଦାଙ୍କ ନାମରେ ଏହାପରେ ବିନିର୍ଦ୍ଦିଷ୍ଟ ପରମାଣ ପର୍ଯ୍ୟନ୍ତ ଭୂମି ବନ୍ଦୋବସ୍ତ କରାଯିବ, ଯଥା-

(କ) ଜଣେ ବସ୍ତି ବାସିନ୍ଦା ଯଥା ସମ୍ଭବ ନିମ୍ନଲିଖିତ ମତେ ଭୂମି ପାଇବାକୁ ହକ୍‌ଦାର ହେବେ -

(i) ପୌର ପରିଷଦ କ୍ଷେତ୍ର ମଧ୍ୟରେ ବସ୍ତିଟି ଥିଲେ, ସର୍ବାଧିକ ପଞ୍ଚଚାଳିଶି ବର୍ଗ ମିଟର;

(ii) ଅଧିସୂଚିତ କ୍ଷେତ୍ର ପରିଷଦ ମଧ୍ୟରେ ବସ୍ତିଟି ଥିଲେ, ସର୍ବାଧିକ ପଞ୍ଚଷଠି ବର୍ଗ ମିଟର;

ପରନ୍ତୁ ଯେଉଁସ୍ଥଳେ ବସ୍ତି ବାସିନ୍ଦା ମୌଳିକ ସ୍ଥାନରେ ବନ୍ଦୋବସ୍ତ ପାଉ ନଥାନ୍ତି, ସେପରି ସ୍ଥଳେ ଥଇଥାନ ସ୍ଥଳରେ ଭୂମିର ସର୍ବାଧିକ ସୀମା ତିରିଶି ବର୍ଗ ମିଟର ଠାରୁ ଅଧିକ ହେବ ନାହିଁ :

ଅଧିକନ୍ତୁ ଯେଉଁସ୍ଥଳେ ଜଣେ ବସ୍ତି ବାସିନ୍ଦା ଉପ-ଖଣ୍ଡ (i) ବା (ii) ରେ

ଉଲ୍ଲିଖିତ କୌଣସି କ୍ଷେତ୍ରରେ ତହିଁରେ ଉଲ୍ଲିଖିତ କ୍ଷେତ୍ରଠାରୁ କମ୍ ଭୂମିର ଦଖଲରେ ଥିବା, ସେହିସ୍ଥଳେ ଉକ୍ତ ବସ୍ତି ବାସିନ୍ଦାଙ୍କ ପ୍ରକୃତ ଦଖଲରେ ଥିବା ଭୂମି ତଦନୁସାରେ ବନ୍ଦୋବସ୍ତ କରାଯିବ ।

(ଖ) ଯେଉଁସ୍ଥଳେ ବସ୍ତି ବାସିନ୍ଦା ଆର୍ଥିକ ଦୁର୍ବଳ ଶ୍ରେଣୀ ବର୍ଗର ହୋଇଥିବେ, ସେହିସ୍ଥଳେ,

(i) ଭୂମି ବିନା ମୂଲ୍ୟରେ ବନ୍ଦୋବସ୍ତ କରାଯିବ ଏବଂ

(ii) ଖଣ୍ଡ (କ)ରେ ଧାର୍ଯ୍ୟ ହୋଇଥିବା ସର୍ବୋଚ୍ଚ ସୀମା ପ୍ରତି ସାପେକ୍ଷ ହୋଇ ତିରିଶି ବର୍ଗ ମିଟରରୁ ଅଧିକା ଭୂମି ବନ୍ଦୋବସ୍ତ ହେଉଥିଲେ, ଉକ୍ତ ଅଧିକା ଭୂମିର ମୂଲ୍ୟ ରାଜ୍ୟ ସରକାରଙ୍କ ଦ୍ୱାରା ସମୟକୁ ସମୟ ଅବଧାରିତ ହେବା ମତେ ନିର୍ଣ୍ଣିତ ମୂଲ୍ୟର ସେପରି ଶତକଡ଼ା ହାରରେ ଗଣନା କରାଯିବ ।

(ଗ) ଯେଉଁସ୍ଥଳେ ବସ୍ତି ବାସିନ୍ଦା, ଆର୍ଥିକ ଦୁର୍ବଳ ଶ୍ରେଣୀ ଭିନ୍ନ ଅନ୍ୟ କୌଣସି ବର୍ଗର ହୋଇଥିବେ, ସେହିସ୍ଥଳେ ସରକାରଙ୍କ ଦ୍ୱାରା ସମୟକୁ ସମୟ ଅବଧାରିତ ହେବା ମତେ ଭୂମିର ନିର୍ଣ୍ଣିତ ମୂଲ୍ୟର ସେପରି ଶତକଡ଼ା ହାରରେ ଗଣନା କରାଯାଇ ଉକ୍ତ ମୂଲ୍ୟରେ ଭୂମି ବନ୍ଦୋବସ୍ତ କରାଯିବ ଏବଂ

(ଘ) ଯେଉଁ ସ୍ଥଳେ ଜଣେ ବସ୍ତି ବାସିନ୍ଦା ଖଣ୍ଡ (କ)ରେ ଉଲ୍ଲିଖିତ ଅନୁମତି ଯୋଗ୍ୟ ସର୍ବାଧିକ ସୀମାଠାରୁ ଅଧିକ ଭୂମି ଦଖଲ କରୁଥିବେ, ସେ ଉକ୍ତ ଅଧିକ ଭୂମିକୁ ସ୍ୱଇଚ୍ଛାରେ ଖାଲି କରିବେ ଏବଂ ପ୍ରାଧିକୃତ ଅଧିକାରୀ ଭୂମି ଅଧିକାର ପ୍ରମାଣପତ୍ର ଜାରି କରିବା ପୂର୍ବରୁ ଉକ୍ତ ଅଧିକା ଭୂମିର ଦଖଲ ନେବେ ।

3. ଉପ-ଧାରା (i) ଅନୁସାରେ ବନ୍ଦୋବସ୍ତ ହୋଇଥିବା ଭୂମି ଦାୟଯୋଗ୍ୟ ହେବ କିନ୍ତୁ ତାହା ସବ୍-ଲିଜ୍, ବିକ୍ରୟ, ଦାନ ବା ଅନ୍ୟ କୌଣସି ରୀତିରେ ହସ୍ତାନ୍ତର ଯୋଗ୍ୟ ହେବ ନାହିଁ; ପରନ୍ତୁ ସେପରି ବନ୍ଦୋବସ୍ତ ହୋଇଥିବା ଭୂମିକୁ କୌଣସି ଆର୍ଥିକ ଅନୁଷ୍ଠାନରୁ ଗୃହନିର୍ମାଣ ଋଣ ଆକାରରେ ଅର୍ଥ ଆଣିବା ଉଦ୍ଦେଶ୍ୟରେ ବନ୍ଧକ ଦିଆଯାଇପାରିବ ।

(4) ବିବାହିତ ବ୍ୟକ୍ତିମାନଙ୍କ କ୍ଷେତ୍ରରେ ଭୂମି ଅଧିକାର ପ୍ରମାଣପତ୍ର ଉଭୟ ପତି ଓ ପତ୍ନୀଙ୍କ ନାମରେ ସଂଯୁକ୍ତଭାବେ ଜାରି କରାଯିବ ଏବଂ ଯଦି ପରିବାରରେ ଜଣେ ମୁଖ୍ୟ ବ୍ୟକ୍ତି ଥାଆନ୍ତି, ତେବେ ମୁଖ୍ୟ ବ୍ୟକ୍ତିଙ୍କ ନାମରେ ତାହା ଜାରି କରାଯିବ ।

(5) ଏହି ଅଧିନିୟମ ଅନୁଯାୟୀ ଯେଉଁ ବସ୍ତି ବାସିନ୍ଦାଙ୍କ ନାମରେ ଭୂମି ବନ୍ଦୋବସ୍ତ କରାଯାଇଥିବ ବା କୌଣସି ଭୂମି ଆବଣ୍ଟନ ପାଇଁ ଅଧିକାର ପାଇଥିବେ, ସେ ଯଦି ଉପ-ଧାରା (୩) ଅନୁଯାୟୀ ବନ୍ଧକ ସୂତ୍ରରେ ନ ହୋଇ ଅନ୍ୟ କୌଣସି

ପ୍ରକାରେ ଉକ୍ତ ଭୂମି ହସ୍ତାନ୍ତର କରନ୍ତି, ବା ଆବାସିକ ଉଦ୍ଦେଶ୍ୟରେ ଭିନ୍ନ ଅନ୍ୟ କୌଣସି ଉଦ୍ଦେଶ୍ୟରେ ବ୍ୟବହାର କରନ୍ତି, ତେବେ-

(କ) ଉପ-ଧାରା(1) ଅନୁଯାୟୀ ଜାରି କରାଯାଇଥିବା ଭୂମି ଅଧିକାର ପ୍ରମାଣପତ୍ର ସ୍ୱତଃ ରଦ୍ଦ ହୋଇଯିବ;

(ଖ) ଉକ୍ତ ହସ୍ତାନ୍ତର ଅକାମୀ ଓ ବ୍ୟର୍ଥ ହୋଇଯିବ;

(ଗ) ଉକ୍ତ ଭୂମି ସଂପର୍କରେ ଅନ୍ତରଣ ଗ୍ରହୀଙ୍କର କୌଣସି ଅଧିକାର ରହିବ ନାହିଁ;

(ଘ) ଉକ୍ତ ଭୂମିର ପ୍ରକୃତ ଦଖଲରେ ଥିବା ବ୍ୟକ୍ତିଙ୍କୁ ପ୍ରାଧିକୃତ ଅଧିକାରୀ ବେଦଖଲ କରିବେ;

(ଙ) ବସ୍ତିବାସିନ୍ଦା ଭବିଷ୍ୟତରେ ଏହି ଅଧିନିୟମ ଅନୁଯାୟୀ କୌଣସି ଭୂମି ପାଇବାରୁ ବଞ୍ଚିତ ହେବେ; ଏବଂ

(ଚ) ଉକ୍ତ ବସ୍ତି ବାସିନ୍ଦା ଏହି ଅଧିନିୟମ ଅନୁଯାୟୀ ଏକ ଅପରାଧ ଦୋଷୀ ହେବେ ।

(6) ଯେଉଁ ବସ୍ତି ବାସିନ୍ଦାଙ୍କ ନାମରେ ଏହି ଅଧିନିୟମ ଅନୁଯାୟୀ ଭୂମି ବନ୍ଦୋବସ୍ତ ହୋଇଥାଏ, ସେ ରାଜ୍ୟର ଅନ୍ୟକୌଣସି ପୌର ଅଞ୍ଚଳରେ ଭୂମି ଅଧିକାର ପ୍ରମାଣପତ୍ର ଧାରଣ କରିବେ ନାହିଁ ଏବଂ ଯଦି ସେ ସେପରି କୌଣସି ପ୍ରମାଣପତ୍ର ଧାରଣ କରୁଥାନ୍ତି, ତେବେ ବିହିତ ହେବା ମତେ ସେପରି ରୀତିରେ ସେପରି ପ୍ରମାଣପତ୍ରଗୁଡ଼ିକ ପ୍ରାଧିକୃତ ଅଧିକାରୀଙ୍କୁ ସମର୍ପଣ କରିବେ ।

(7) ଯଦି କୌଣସି ବସ୍ତି ବାସିନ୍ଦା ଭୁଲ ତଥ୍ୟ ଦେଇ ଏକାଧିକ ଭୂମି ଅଧିକାର ପ୍ରମାଣପତ୍ର ହାସଲ କରିଥିବା ଜଣାପଡ଼େ, ତେବେ ବସ୍ତି ବାସିନ୍ଦାଙ୍କୁ ଶୁଣାଣିର ଏକ ଯୁକ୍ତିଯୁକ୍ତ ସୁଯୋଗ ଦେବାପରେ ପ୍ରାଧିକୃତ ଅଧିକାରୀ ସମସ୍ତ ଭୂମି ଅଧିକାର ପ୍ରମାଣପତ୍ରଗୁଡ଼ିକ ନାକଚ କରିଦେବେ ଏବଂ ଏହି ଅଧିନିୟମ ଅନୁଯାୟୀ ଯେଉଁ ଶାସ୍ତି ବିଧାନ କରାଯାଇପାରେ, ସେଥିପ୍ରତି କୌଣସି ଆଞ୍ଚ୍ ନଆଣି ଉକ୍ତ ବ୍ୟକ୍ତିଙ୍କୁ ସେହି ଭୂମିରୁ ବେଦଖଲ କରିବେ ।

(8) ବସ୍ତି ବାସିନ୍ଦାଙ୍କ ନାମରେ ଉପ-ଧାରା (1) ଅନୁଯାୟୀ ଭୂମି ଅଧିକାର ପ୍ରମାଣପତ୍ର ମଞ୍ଜୁର କରିବା ସକାଶେ ପ୍ରମାଣ ରୂପେ ନିମ୍ନଲିଖିତ ଦସ୍ତାବିଦ ଓ ରେକର୍ଡ଼ମାନ ଗ୍ରହଣ କରାଯିବ ।

(କ) ଆଧାର କାର୍ଡ଼, ଭୋଟରେ ପରିଚୟ ପତ୍ର, ଜାତୀୟ ଖାଦ୍ୟ ସୁରକ୍ଷା ଅଧିନିୟମ, ୨୦୧୩ ଅନୁଯାୟୀ ରାସନ କାର୍ଡ଼, ରାଷ୍ଟ୍ରୀୟ ସ୍ୱାସ୍ଥ୍ୟ ବୀମା ଯୋଜନା (ଆର୍‌ଏସ୍‌ବିୱାଇ) ଅନୁଯାୟୀ ସ୍ମାର୍ଟ କାର୍ଡ଼ ବା ପାସ୍‌ପୋର୍ଟ ପରି ସରକାରୀ ପ୍ରାଧିକୃତ ଦସ୍ତାବିଜ୍;

(ଖ) ଜନଗଣନା, ସର୍ଭେ, ମ୍ୟାପ୍, ଉପଗ୍ରହ ଚିତ୍ର, ଯୋଜନା, ରିପୋର୍ଟ, କମିଟି ଓ କମିସନଙ୍କ ରିପୋର୍ଟ, ସରକାରୀ ଆଦେଶ, ଅଧିସୂଚନା, ସର୍କୁଲାର ସଂକଳ୍ପପରି ସରକାରୀ ରେକର୍ଡ଼ ।

(୨) ଉପ-ଧାରା (1) ଅନୁଯାୟୀ ମଞ୍ଜୁର କରାଯାଇଥିବା ଭୂମି ଅଧିକାର ପ୍ରମାଣପତ୍ରକୁ ନିବାସ ସ୍ଥାନ ଠିକଣାର ପ୍ରମାଣ ରୂପେ ଗ୍ରହଣ କରାଯିବ ।

4. (i) ଏହି ଅଧିନିୟମର ଅନ୍ୟ ବ୍ୟବସ୍ଥାଗୁଡ଼ିକ ପ୍ରତି ସାପେକ୍ଷ ହୋଇ, ଧାରା ୩ର ଉପ-ଧାରା (1) ଅନୁଯାୟୀ ଅର୍ପଣ କରାଯାଇଥିବା ଭୂମି ଅଧିକାର ପ୍ରମାଣପତ୍ର, ଯଥା ସମ୍ଭବ ମୌଳିକ ସ୍ଥାନରେ ଓ ଯେଉଁଠାରେ ଯେମିତି ଅବସ୍ଥାରେ ଅଛି ଆଧାରରେ ଦିଆଯିବ । ପରନ୍ତୁ ଯଦି ଜାଗାଟିରେ ଅନୁମତି ଅଯୋଗ୍ୟ ବସତି ଅଛି ବୋଲି ରାଜ୍ୟ ସରକାର ନିଷ୍ପତ୍ତି ନିଅନ୍ତି, ତେବେ ସେପରି ପରିସ୍ଥିତିରେ ବସ୍ତି ବାସିନ୍ଦାମାନଙ୍କୁ ଅନ୍ୟ କୌଣସି ସ୍ଥାନରେ ଥଇଥାନ କରାଯିବ :

ଅଧିକନ୍ତୁ -

(କ) ଯେଉଁସ୍ଥଳେ ବସ୍ତି ବାସିନ୍ଦାମାନଙ୍କୁ ଅନ୍ୟ କୌଣସି ସ୍ଥାନରେ ଥଇଥାନ କରାଯିବା ପାଇଁ ନିଷ୍ପତ୍ତି ନିଆଯାଏ, ସେହି ସ୍ଥଳେ ଉକ୍ତ ଜାଗାଟି ରାଜ୍ୟ ସରକାର ନିଷ୍ପତ୍ତି ନେବାମତେ ଅନ୍ୟ କୌଣସି ଉଦ୍ଦେଶ୍ୟରେ ଉପଯୋଗ କରାଯିବ ।

(ଖ) ଯେଉଁସ୍ଥଳେ ବିଦ୍ୟମାନ ବସ୍ତିରେ ବସ୍ତି ବାସିନ୍ଦାଙ୍କୁ ଭୂମି ଯୋଗାଇଦେବା ପରେ କୌଣସି ଉଦ୍‌ବୃତ୍ତ ଭୂମି ରହେ, ସେହି ସ୍ଥଳେ ରାଜ୍ୟ ସରକାର ନିଷ୍ପତ୍ତି ନେବା ମତେ ଉକ୍ତ ଭୂମିକୁ ଅନ୍ୟ କୌଣସି ଉଦ୍ଦେଶ୍ୟରେ ଉପଯୋଗ କରାଯିବ ।

(2) ମୌଳିକ ସ୍ଥାନର ପୁନର୍ବିକାଶ କରାଯିବା ସ୍ଥଳେ, ସେ ସଂକ୍ରାନ୍ତରେ ପ୍ରଯୁଜ୍ୟ ଯୋଜନା ଓ ନିର୍ମାଣ ବିନିମୟମାନ ପ୍ରୟୋଗ କରାଯିବ ଏବଂ ଯେଉଁସ୍ଥଳେ ପୁନର୍ବିକାଶ ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ସେଥିରେ କୌଣସି କୋହଳ କରିବା ଦରକାର ପଡ଼େ, ସେହିସ୍ଥଳେ ଉକ୍ତ ବିନିମୟ ଅନୁଯାୟୀ ଅନୁମତିଯୋଗ୍ୟ ବ୍ୟତିକ୍ରମ ଅନୁସାରେ ତାହା ମଞ୍ଜୁର କରାଯାଇଛି ବୋଲି ବିବେଚିତ ହେବ ।

(3) ବସ୍ତି ଅଞ୍ଚଳର ପୁନର୍ବିକାଶ କରାଯିବା ସମୟ ମଧ୍ୟରେ ସରକାରଙ୍କ ଦ୍ୱାରା ସମୟକୁ ସମୟ ଜାରି କରାଯାଇଥିବା ଗୃହ ନିର୍ମାଣ ପରିକଳ୍ପନା ଅନୁଯାୟୀ

ବ୍ୟବସ୍ଥା କରାଯାଇଥିବା ମତେ ଆବଶ୍ୟକ ହେଉଥିବା ସେପରି ଅବଧି ପାଇଁ ବସ୍ତି ବାସିନ୍ଦାମାନଙ୍କୁ ରହିବା ଜାଗା ଯୋଗାଇ ଦିଆଯିବ ।

5. ଅପ୍ରାଧିକୃତ ଦଖଲ ହେତୁ ରାଜ୍ୟର କୌଣସି ବିଧି ଅନୁଯାୟୀ କୌଣସି ପ୍ରାଧିକାରୀ ବା ନ୍ୟାୟାଳୟ ସମକ୍ଷରେ ବସ୍ତି ବାସିନ୍ଦାମାନଙ୍କ ଉଚ୍ଛେଦ ସଂପର୍କିତ ବିଚାରାଧୀନ ସମସ୍ତ କାର୍ଯ୍ୟବିଧି, ଏହି ଅଧିନିୟମ ଅନୁଯାୟୀ ଭୂମି ଅଧିକାର ପ୍ରମାଣପତ୍ର ଜାରି କରାଯିବା ପରେ ଆଉ ଚାଲିବ ନାହିଁ ।

## ଅଧ୍ୟାୟ III

## ଭୂମି ଅଧିକାର ବନ୍ଦୋବସ୍ତ ପାଇଁ ପ୍ରାଧିକାରୀ ଓ ପ୍ରକ୍ରିୟା

6. (1) ଏହି ଅଧିନିୟମ ଉଦ୍ଦେଶ୍ୟରେ ରାଜ୍ୟ ସରକାର ଆବଶ୍ୟକ ବିବେଚନା କରିବା ମତେ ଅଧିସୂଚନା ଦ୍ୱାରା ପ୍ରତ୍ୟେକ ପୌରାଞ୍ଚଳ ପାଇଁ ଉକ୍ତ ପୌରାଞ୍ଚଳ ନାମରେ ପୌରାଞ୍ଚଳ ବସ୍ତି ପୁନର୍ବିକାଶ ଓ ଥଇଥାନ କମିଟି ନାମରେ ଗୋଟିଏ ଲେଖାଏଁ କମିଟି ଗଠନ କରିବେ ଏବଂ ଏହି ଅଧିନିୟମ ଅନୁଯାୟୀ ଯେଉଁ ବ୍ୟକ୍ତିମାନଙ୍କ ନାମରେ ଭୂମି ବନ୍ଦୋବସ୍ତ କରାଯିବ ସେମାନଙ୍କ ତାଲିକା ଅନୁମୋଦନ କରିବା ପାଇଁ ଉକ୍ତ କମିଟିର ପ୍ରାଧିକାର ରହିବ ଓ ଉକ୍ତ ଅଞ୍ଚଳ ଉପରେ ଅଧିକାରିତା ପ୍ରୟୋଗ କରିବ ଓ ବିହିତ ହେବା ମତେ ସେପରି କ୍ଷମତା ଓ କୃତ୍ୟମାନ ସମ୍ପାଦନ କରିବ ।

(2) ଜିଲ୍ଲାର ଜିଲ୍ଲାପାଳ ପ୍ରତ୍ୟେକ କମିଟିର ମୁଖ୍ୟ ହେବେ ଏବଂ ତାହା ବିହିତ ହେବା ମତେ ସେପରି ଅନ୍ୟ ସଦସ୍ୟମାନଙ୍କୁ ନେଇ ଗଠିତ ହେବ ।

(3) ଉପ-ଧାରା (1) ଅନୁଯାୟୀ କ୍ଷମତା ଓ କୃତ୍ୟଗୁଡ଼ିକର ବ୍ୟାପକତା ପ୍ରତି ପ୍ରତିକୂଳ ପ୍ରଭାବ ନ ପକାଇ କମିଟି ପ୍ରସ୍ତୁତ କରିବ, ବସ୍ତିଗୁଡ଼ିକର ଚଉହଦୀ ଧାର୍ଯ୍ୟ କରିବ, ଗୋଷ୍ଠୀ ସହାୟତା ଯୋଗ୍ୟ ବସ୍ତି ବାସିନ୍ଦାମାନଙ୍କୁ ଚିହ୍ନଟ କରିବ, ଭୂମି ଅଧିକାର ପ୍ରମାଣପତ୍ର ଜାରି କରାଯାଇଥିବା ବସ୍ତି ବାସିନ୍ଦାମାନଙ୍କ ତାଲିକା ପ୍ରସ୍ତୁତ ଓ ପ୍ରକାଶନ କରିବ ।

(ଖ) ଏହି ଅଧିନିୟମ ଓ ତଦଧୀନ ପ୍ରଣିତ ନିୟମାବଳୀର ବ୍ୟବସ୍ଥାଗୁଡ଼ିକୁ ସୁଗମିତ ଓ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ କମିଟି ଦ୍ୱାରା ବିନିର୍ଦ୍ଦିଷ୍ଟ ହେବା ମତେ ସେପରି ସଦସ୍ୟମାନଙ୍କୁ ନେଇ ପ୍ରତ୍ୟେକ ବସ୍ତି ଅଞ୍ଚଳ ବା କେତେକ ବସ୍ତି ପାଇଁ ସବ୍‌କମିଟି ଗଠନ କରିବ ।

(୪) କମିଟିର କୃତ୍ୟଗୁଡ଼ିକ ଦକ୍ଷତାର ସହ ସମ୍ପାଦନ କରିବା ଉଦ୍ଦେଶ୍ୟରେ ସମୟକୁ ସମୟ ଅଧିସୂଚିତ ହେବା ମତେ ରାଜ୍ୟ ସରକାର, ସେପରି ଅଧିକାରୀ ଓ କର୍ମଚାରୀମାନଙ୍କୁ ଯୋଗାଇ ଦେବେ ।

7. କମିଟିର କାର୍ଯ୍ୟ ସଂଚାଳନ ଓ କୃତ୍ୟଗୁଡ଼ିକ ସମ୍ପାଦନ କରିବା ପାଇଁ କମିଟି, ବିହିତ ହେବାମତେ ସେପରି ପ୍ରକ୍ରିୟା ଅନୁସରଣ କରିବ ।

8. (1) ଯେପରି ନିୟମାବଳୀ ପ୍ରଣୟନ କରାଯିବ, ତାହା ପ୍ରତି ସାପେକ୍ଷ ହୋଇ ଏହି ଅଧିନିୟମ ଅନୁଯାୟୀ କରାଯାଇଥିବା କୌଣସି ନିଷ୍ପତ୍ତି ବା ଆଦେଶ ବିରୁଦ୍ଧରେ ରାଜ୍ୟ ସରକାରଙ୍କ ଦ୍ୱାରା ନିଯୁକ୍ତ ସେପରି ଅଧିକାରୀଙ୍କ ନିକଟରେଆପିଲ ଆଗତ କରାଯାଇପାରିବ ।

(2) ଏହି ଧାରା ଅନୁଯାୟୀ ଆଗତ କରାଯାଇଥିବା ପ୍ରତ୍ୟେକ ଅପିଲ, ବିହିତ ହେବା ମତେ ସେପରି ରୀତିରେ ଶୁଣାଣି କରାଯିବ ଓ ଫଏସଲା କରାଯିବ ।

(3) ଏହି ଧାରା ଅନୁଯାୟୀ ଅପିଲ ପ୍ରାଧିକାରୀଙ୍କ ଦ୍ୱରା ଦିଆଯାଇଥିବା ପ୍ରତ୍ୟେକ ଆଦେଶ ଚୂଡ଼ାନ୍ତ ହେବ ।

## ଅଧ୍ୟାୟ IV

## ଅପରାଧ ଓ ଶାସ୍ତି

୨. ଯେ କେହି ଧାରା 3 ର ଉପ-ଧାରା (5) ଓ (6) ର ବ୍ୟବସ୍ଥାଗୁଡ଼ିକ ଉଲ୍ଲଂଘନ କରିବେ ବା ଏହି ଅଧିନିୟମ ବା ତଦଧୀନ ପ୍ରଣୀତ ନିୟମାବଳୀ ଅନୁଯାୟୀ ଜାରି କରାଯାଇଥିବା କୌଣସି ନୋଟିସ୍ ବା ଆଦେଶର ଅନୁପାଳନ କରିବାରେ ବିଫଳ ହେବେ, ସେ ଏକ ବର୍ଷ ପର୍ଯ୍ୟନ୍ତ କାରାବାସ ବା କୋଡ଼ିଏ ହଜାର ଟଙ୍କା ପର୍ଯ୍ୟନ୍ତ ଜୋରିମାନା ବା ଉଭୟ ଦଣ୍ଡରେ ଦଣ୍ଡନୀୟ ହେବେ ।

## ଅଧ୍ୟାୟ V

## ବିବିଧ

10. (i) ପ୍ରତ୍ୟେକ ପୌର ସ୍ଥାନୀୟ ନିକାୟ ସ୍ତରରେ ପୌରାଞ୍ଚଳ ଗରିବ କଲ୍ୟାଣ ପାଣ୍ଠି ନାମକ ଗୋଟିଏ ଲେଖାଏଁ ପାଣ୍ଠି ଗଠନ କରାଯିବ । ଏହି ଅଧିନିୟମ ଅନୁଯାୟୀ ବସ୍ତି ବାସିନ୍ଦାମାନଙ୍କ ଠାରୁ ପ୍ରାପ୍ତ ସମସ୍ତ ଅର୍ଥ ଉକ୍ତ ପାଣ୍ଠିରେ ଜମା କରାଯିବା ସଂଗେ ସଂଗେ ନିମ୍ନ ସୂତ୍ରରୁ ପ୍ରାପ୍ତ ଅର୍ଥ ମଧ୍ୟ ତହିଁରେ ଜମା କରାଯାଇପାରିବ, ଯଥା-

(କ) ରାଜ୍ୟ ସରକାର ଓ କେନ୍ଦ୍ର ସରକାରଙ୍କଠାରୁ ପ୍ରାପ୍ତ କୌଣସି ଅର୍ଥ ଦାନ :

(ଖ) ବିଭିନ୍ନ ସଂଗଠନ, ବଦାନ୍ୟ ବ୍ୟକ୍ତି, ବ୍ୟକ୍ତିବିଶେଷ ଓ ବେସରକାରୀ ସଂଗଠନମାନଙ୍କ ଠାରୁ ପ୍ରାପ୍ତ ଅର୍ଥ ଦାନ ଓ

(ଗ) ରାଜ୍ୟ ସରକାରଙ୍କ ଦ୍ୱାରା ଅଧିସୂଚିତ ହେବା ମତେ ଅନ୍ୟ କୌଣସି ସୂତ୍ରରୁ ପ୍ରାପ୍ତ ପାଣ୍ଠି ।

(2) ବିହିତ ହେବା ମତେ ସେପରି ରୀତିରେ ପାଣ୍ଠିର ଗଠନ ଓ ପରିଚାଳନା କରାଯିବ । ସ୍ପଷ୍ଟୀକରଣ - ଏହି ଧାରା ଉଦ୍ଦେଶ୍ୟରେ ପୌର ସ୍ଥାନୀୟ ନିକାୟ ଅର୍ଥ ଓଡ଼ିଶା ପୌର ଅଧିନିୟମ, ୧୯୫୦ ଅନୁଯାୟୀ ଗଠିତ ପୌର ପରିଷଦ ଓ ଅଧିସୂଚିତ କ୍ଷେତ୍ର ପରିଷଦ ।

11. ଏହି ଅଧିନିୟମ ଅନୁଯାୟୀ ସତ୍ ବିଶ୍ୱାସରେ କରାଯାଇଥିବା ବା କରିବା ପାଇଁ ଉଦ୍ଦିଷ୍ଟ ଥିବା କୌଣସି କାର୍ଯ୍ୟାନୁଷ୍ଠାନ ପାଇଁ ରାଜ୍ୟ ସରକାର ବା ରାଜ୍ୟ ସରକାରଙ୍କର କୌଣସି ଅଧିକାର ବା କର୍ମଚାରୀ ବା ଏହି ଅଧିନିୟମ ଅନୁଯାୟୀ ଗଠିତ କମିଟି ବା କୌଣସି ଉପ-କମିଟି ବିରୁଦ୍ଧରେ କୌଣସି ମକଦ୍ଦମା, ଅଭିଯୋଜନା ବା ଅନ୍ୟ ବିଧିକ କାର୍ଯ୍ୟବିଦ୍ଧି ଆଗତ କରାଯିବ ନାହିଁ ।

12. ଏହି ଅଧଫନିୟମର ବ୍ୟବସ୍ଥାଗୁଡ଼ିକୁ କାର୍ଯ୍ୟକାରୀ କରିବା ସକାଶେ ରାଜ୍ୟ ସରକାର ବା ଏତଦ୍ ଉପଲକ୍ଷେ ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରାଧିକୃତ କୌଣସି ଅଧିକାରୀ ବା ପ୍ରାଧିକାରୀ ନୋଡ଼ାଲ ସଂସ୍ଥା ରୂପେ କାର୍ଯ୍ୟ କରିବେ ।

13. (1) ଏହି ଅଧିନିୟମର ବ୍ୟବସ୍ଥାଗୁଡ଼ିକ କାର୍ଯ୍ୟକାରୀ କରିବାରେ ଯଦି କୌଣସି ଅସୁବିଧା ଉପୁଜେ, ତେବେ ରାଜ୍ୟ ସରକାର ସରକାରୀ ଗେଜେଟ୍‌ରେ ଆଦେଶ ପ୍ରକାଶ କରି, ଉକ୍ତ ଅସୁବିଧାକୁ ଦୂର କରିବା ପାଇଁ ଯେପରି ଆବଶ୍ୟକ ବା ସମୀଚୀନ ମନେ କରିବେ ଏହି ଅଧିନିୟମର ବ୍ୟବସ୍ଥାଗୁଡ଼ିକ ସହିତ ଅସଙ୍ଗତି ହେଉ ନଥିବା ସେପରି ବ୍ୟବସ୍ଥାମାନ ପ୍ରଣୟନ କରିପାରିବେ ।

(2) ଏହି ଧାରା ଅନୁଯାୟି କରାଯାଇଥିବା ପ୍ରତ୍ୟେକ ଆଦେଶ ତାହା ପ୍ରଣୟନ କରାଯିବା ପରେ ପରେ ଓଡ଼ିଶା ବିଧାନ ସଭାରେ ଉପସ୍ଥାପନ କରାଯିବ ।

14. ଏହି ଅଧିନିୟମ ଦ୍ୱାରା ବା ଅନୁଯାୟୀ ଯେଉଁ ବିଷୟ ଅବଧାରଣ କରିବା ପାଇଁ ରାଜ୍ୟ ସରକାର ବା ଏହି ଅଧିନିୟମ ଅନୁଯାୟୀ ଗଠିତ କମିଟି କ୍ଷମତାପନ୍ନ ଅଟନ୍ତି, ସେ ବିଷୟ ସମ୍ପର୍କିତ କୌଣସି ମକଦ୍ଦମା ବା କାର୍ଯ୍ୟବିଧି ବିଗ୍ଭର ପାଇଁ ଗ୍ରହଣ କରିବାରେ କୌଣସି ସିଭିଲ ନ୍ୟାୟାଳୟର ଅଧିକାରିତା ରହିବ ନାହିଁ

ଏବଂ ଏହି ଅଧିନିୟମ ଦ୍ୱାରା ବା ଅନୁଯାୟୀ ଅର୍ପିତ କୌଣସି କ୍ଷମତା ଅନୁକୂଳ କରାଯାଇଥିବା ବା କରିବା ପାଇଁ ଉଦ୍ଦିଷ୍ଟ କୌଣସି କାର୍ଯ୍ୟାନୁଷ୍ଠାନ ସଂକ୍ରାନ୍ତରେ କୌଣସି ନ୍ୟାୟଳୟ ବା ପ୍ରାଧିକାରୀ କୌଣସି ନିଷେଧାଜ୍ଞା ମଞ୍ଜୁର କରିବେ ନାହିଁ ।

15. (1) ପ୍ରଥମ ଶ୍ରେଣୀ ବିଚାର ବିଭାଗୀୟ ମାଜିଷ୍ଟ୍ରେଟଙ୍କ ନ୍ୟାୟାଳୟ ଠାରୁ ନିମ୍ନତର କୌଣସି ନ୍ୟାୟାଳୟ, ଏହି ଅଧିନିୟମ ଅନୁଯାୟୀ ଦଣ୍ଡନୀୟ କୌଣସି ଅପରାଧର ବିଚାର କରିବେ ନାହିଁ ।

(2) ପ୍ରାଧିକକୃତ ଅଧିକାରୀ ବା ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରାଧିକୃତ ରାଜ୍ୟ ସରକାରଙ୍କ ବା କମିଟିର କୌଣସି ଅଧିକାରୀମାନଙ୍କ ଠାରୁ ଲିଖିତ ଅଭିଯୋଗ ନ ପାଇଲେ କୌଣସି ନ୍ୟାୟାଳୟ ଏହି ଅଧିନିୟମ ଅନୁଯାୟୀ ଦଣ୍ଡନୀୟ କୌଣସି ଅପରାଧର ସଂଜ୍ଞାନ ନେବେ ନାହିଁ ।

16. ଏହି ଅଧିନିୟମର ସମସ୍ତ ବା ଯେକୌଣସି ବ୍ୟବସ୍ଥାକୁ କାର୍ଯ୍ୟକାରୀ କରିବା ସକାଶେ ରାଜ୍ୟ ସରକାର ସରକାରୀ ଗେଜେଟ୍‌ରେ ଅଧିସୂଚନା ପ୍ରକାଶ କରି ନିୟମାବଳୀ ପ୍ରଣୟନ କରିପାରିବେ ।

17. ରାଜ୍ୟର ଅନ୍ୟ ବିଧିଗୁଡ଼ିକରେ ଏହା ସହିତ ଅସଙ୍ଗତ ହେଉଥିବା ଯାହାକିଛି ଥିବା ସତ୍ତ୍ୱେ ଏହି ଅଧିନିୟମ ବା ତଦଧୀନ ପ୍ରଣୀତ ନିୟମାବଳୀର ପ୍ରଭାବ ରହିବ ।

18. (1) ଏତଦ୍ୱାରା ଓଡ଼ିଶା ବସ୍ତି ବାସିନ୍ଦାମାନଙ୍କ ଭୂମି ଅଧିକାର ଅଧ୍ୟାଦେଶ, ୨୦୧୭ ନିରସିତ ହେଲା ।

(2) ସେପରି ନିରସନ ସତ୍ତ୍ୱେ, ଉକ୍ତ ନିରସିତ ଅଧ୍ୟାଦେଶ ଅନୁଯାୟୀ କରାଯାଇଥିବା କୌଣସି କାର୍ଯ୍ୟାନୁଷ୍ଠାନ, ଏହି ଅଧିନିୟମର ଅନୁରୂପ ବ୍ୟବସ୍ଥା ଅନୁଯାୟୀ କରାଯାଇଛି ବା ନିଆଯାଇଛି ବୋଲି ବିବେଚିତ ହେବ ।

✿✿✿

# ପ୍ରକାଶନ ସଂସ୍ଥାର ଅନ୍ୟାନ୍ୟ ପୁସ୍ତକ

୧. ହଁ ଏକ କୌଶଳ
୨. ଦଶଂଧିର ନାଟକ
୩. ଶିକ୍ଷା, ଶିକ୍ଷାର୍ଥୀ, ଶିକ୍ଷକ ଓ ଶିକ୍ଷାୟତନ ( ୨ ୦ଟଙ୍କିଆ ପୁସ୍ତକମାଳା)
୪. କଳାଟଙ୍କା ଓ ନିର୍ବାଚନ "
୫. ଆମ ରାଜ୍ୟର କୋଇଲା, ପାଣିରୁ ଉତ୍ପନ୍ନ
ସଂପଦ-ବିଦ୍ୟୁତ୍-କାହା ସ୍ୱାର୍ଥରେ "
୬. ପାଣି "
୭. ସଂକଟରେ ମହାନଦୀ "
୮. ମଜୁରୀ "
୯. ଶ୍ରମିକ "
୧୦. ସ୍ୱରାଜପଥେ "
୧୧. କେନ୍ଦ୍ର-ରାଜ୍ୟ ସଂପର୍କ( ୧ ) "
୧୨. କେନ୍ଦ୍ର - ରାଜ୍ୟସଂପର୍କ( ୨ ) "
୧୩. ଯୋଜନା "





ଲୋକାଭିପ୍ରେତ ଅର୍ଥନୀତି ଓ ତତ୍‌ସଂପର୍କୀତ ନୀତି (Public Finance and Policy) କୁ ନେଇ ରାଜ୍ୟସ୍ତରୀୟ ଏକ ଗବେଷଣାଗାର, ପୁସ୍ତକାଗାର ଓ ତଥ୍ୟାଗାର (Library and Information Centre) ପ୍ରତିଷ୍ଠା ହୋଇଛି । ସେହି ଅନୁଷ୍ଠାନ ରାଜ୍ୟ ପବ୍ଲିକ୍ ଫାଇନନ୍‌ସ ଆଣ୍ଡ୍ ପଲିସି ଇନ୍‌ଷ୍ଟିଚ୍ୟୁଟ୍ ତରଫରୁ ଅନେକ ତଥ୍ୟ ସମ୍ବଳିତ ନୀତି ନିର୍ଦ୍ଧାରଣକାରୀ କ୍ଷୁଦ୍ର କ୍ଷୁଦ୍ର ପୁସ୍ତକ (ଟ୍ୱେଣ୍ଟି ରୁପି ସିରିଜ୍) ପ୍ରକାଶ ପାଉଛି । ରାଜ୍ୟ ବଜେଟ, ଅର୍ଥ କମିଶନ ଓ ବିଭିନ୍ନ ଯୋଜନା ସଂପର୍କରେ କର୍ମଶାଳା, ଅଧ୍ୟୟନମାନ ଆୟୋଜିତ ହୋଇଥାଏ । ବୃହତ୍ତର ଉଦ୍ଦେଶ୍ୟ ରଖି କ୍ଷୁଦ୍ର ଉଦ୍ୟମ ମାତ୍ର । ଏହି ସଂସ୍ଥା ସହିତ ଅନେକ ବିଦ୍ୱାନ ଯୁବ ଅର୍ଥଶାସ୍ତ୍ରୀମାନେ ଯୋଡ଼ିହୋଇ ରହିଛନ୍ତି । ଚେୟାରମ୍ୟାନଭାବେ ଶ୍ରୀ ପଞ୍ଚାନନ କାନୁନ୍‌ଗୋ ଏସବୁର ଉପସ୍ଥାପନା ଓ ସଂଯୋଜନା କରି ଆସିଛନ୍ତି । ଓଡ଼ିଶା ଭଳି ରାଜ୍ୟରେ ଏପରି ଉଦ୍ୟମ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିବା ସମ୍ଭବ ନୁହେଁ । କିନ୍ତୁ ଏହି ଉଦ୍ୟମ ଅତ୍ୟନ୍ତ ନିଷ୍ଠାର ସହ ନିରନ୍ତର ଚାଲୁ ରହିଛି । ଭାରତୀୟ ବିଦ୍ୟା ଭବନର ସମସ୍ତ ପ୍ରାଚୀନ କାର୍ଯ୍ୟାବଳୀ ଦେଖିଲେ ଅତୀତରେ ପ୍ରକାଶିତ ଏକଟଙ୍କିଆ ପୁସ୍ତକମାଳା (ୱାନ୍ ରୁପି ସିରିଜ୍)କୁ ଅନୁକରଣ ପୂର୍ବକ ଏହି କ୍ଷୁଦ୍ର ପୁସ୍ତକ ସବୁ ପ୍ରସ୍ତୁତ ହେଉଛି । ଲାଭକ୍ଷତିର ହିସାବ କେବଳ ପାଠକୀୟ ଆଦରକୁ ନେଇ ହେବ ଓ ଆଦର ଲାଭାଂଶ ଆକଳନ ହେବ । ଏକଥା ଦେଖିବାକୁ ମିଳୁଛି ଯେ ପୂର୍ବ ପ୍ରକାଶିତ ଅନେକ ପୁସ୍ତକ ଅଳ୍ପଦିନ ଭିତରେ ଦ୍ୱିତୀୟ ସଂସ୍କରଣ ପ୍ରକାଶ ହୋଇ ସାରିଛି ବା ଅପେକ୍ଷାରେ ଅଛି । ତାହାହିଁ ପାଠକୀୟ ଆଦରର ପୁଞ୍ଜି ଠୁଳ କରିଛି ।

– ପ୍ରକାଶକ ସଂସ୍ଥା



ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ପବ୍ଲିକ୍ ଫାଇନାନ୍‌ସ ଆଣ୍ଡ୍ ପଲିସି
ମଧୁସୂଦନ ନଗର, ୟୁନିଟ୍-୪, ଭୁବନେଶ୍ୱର
ମୋ. ୦୬୭୪-୨୫୦୬୭୮୪, ୯୪୩୮୩୬୦୮୪୯

ଟ. ୨୦.୦୦

Twenty Rupees Series